# ଜାଫନାର କବିତା

ଶିବରାମ ଶତପଥୀ



# କାଫନାର କବିତା

ଶିବରାମ ଶତପଥୀ

# ଜାଫନାର କବିତା

ଶ୍ରୀ ଶିବରାମ ଶତପଥୀ

ଆତ୍ମପ୍ରକାଶ :
ବିଶ୍ୱକର୍ମା ପୂଜା, ୨୦୦୩


ଶ୍ରୀ ଶିବରାମ ଶତପଥୀ
ଶେଖର ନଗର
ଗୁଣପୁର-୭୬୫୦୨୨

ମୂଲ୍ୟ : ତିରିଶ ଟଙ୍କା

ମୁଦ୍ରଣ :
ଶାଶ୍ୱତ ମୁଦ୍ରଣୀ, ୧/୪ ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍
ବହୁବଜାର, କଲକାତା-୭୦୦୦୧୨
ଫୋନ : ୨୨୧୯ ୩୩୮୦

# ଉତ୍ସର୍ଗ

ମୋ ହୃଦୟରେ ଭାଷା ଓ ଭାବର ପ୍ରଥମ ଅଙ୍କୁରୋଦ୍‌ଗମ ଯେଉଁ ସ୍ୱନାମଧନ୍ୟ ଶିକ୍ଷକ ତଥା ମୋ'ର ଜନକ ଓ ପ୍ରଥମ ଗୁରୁ ସୃଷ୍ଟି କରିଥିଲେ ସେହି ମହାମହିମ ଶ୍ରୀଯୁକ୍ତ ରାଧାମୋହନ ଶତପଥୀଙ୍କ କର-କମଳରେ ମୋର ପ୍ରଥମ ପ୍ରକାଶ 'ଛାପନାର କବିତା' ଅର୍ପଣ କଲି ।

—ଶିବରାମ

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ପ୍ରାକ୍‌କଥନ (୧) | ୯ | ରକ୍ଷତା | ରୁକ୍ଷତା |
| ପଦେଅଧେ (୩) | ୯ | କବିତାଗଡ଼ିକ | କବିତାଗୁଡ଼ିକ |
| ୧ | ୧୨ } | ଶୋଇ | ଶୋଭ |
| ଶେଷରୁ | ୩ } | ପ୍ରତିଚୀ | ପ୍ରତୀଚୀ |
| ୨ | ୧ } | ସିନ୍ଦୂର-ବଦନ | ସିନ୍ଧୁରବଦନ |
| ୬୫ | ୪ } | | |
| ୪ | ୮ | ସିଂହନତନ | ସଂହନନେ |
| ୧୨ | ୧ | ଗଡ଼ିଗଲେ | ଗଡ଼ିଚାଲେ |
| ୧୬ | ୩ | ଗଭାକଛେରୀ | ଚାଭାକଛେରୀ |
| ୧୯ | ଶେଷରୁ ୨ | କାହୁର | କାହ୍ନୁର |
| ୨୨ | ୧୮ | ଜଗତି | ଜଗତୀ |
| ୨୬ | ୧୯ | ହରୀ | ହିରୀ |
| ୨୮ | ୫ | ଚକ୍ରବାକେ | ବକ୍ରବାକେ |
| ୩୩ | ୧୬ | ମୁହୁର୍ମୁହୁ | ମୁହୁର୍ମୁହୁଃ |
| ୩୫ | ୧୦ | ପୋଷାକ | ପୋଷକ |
| ୩୬ | ୨୧ | ଗଲୁ | ଚାଲୁ |
| ୩୯ | ୫ | କଳା | କାଳୀ |
| ୪୧ | ୧୮ | ମୁହୁର୍ମୁହୁ | ମୁହୁର୍ମୁହୁଃ |
| ୪୫ | ୬ | ମୁମୂର୍ଷୁ | ମୁମୁକ୍ଷୁ |
| ୪୫ | ୧୨ | ଝଲକି | ଝଳକି |
| ୪୬ | ୧୮ | ଜହ୍ନସୁତା | ଜହ୍ନୁସୁତା |
| ୬୨ | ୨ | କାହିଁ | ନାହିଁ |
| ୬୫ | ୬ | ପ୍ରମାଦରେ | ପରମାଦରେ |
| ୬୯ | ୫ | ବାସୁକୀ | ବାସୁକି |
| ୬୯ | ଶେଷଧାଡ଼ି | ଉପଗହ | ଉପଗ୍ରହ |
| ୭୧ | ଶେଷରୁ ୩ | ପ୍ରଣୟିଭିକ୍ଷା | ପ୍ରଣୟଭିକ୍ଷା |
| ୭୩ | ୨୦ | କଳି | କଳୀ |
| ୭୫ | ୧୬ | ନାହିଁ | ପହିଁ |

# ପ୍ରାକ୍ କଥନ

ଯୁଦ୍ଧ କ୍ଷେତ୍ରର ବିଭୀଷିକା ଭିତରେ, ବିବିଧ ମାନସିକ ଦ୍ୱନ୍ଦ୍ୱ ଓ ଦୋଳନ ସତ୍ତ୍ୱେ ଅବସର ସମୟକୁ ସରସ ମଧୁର କରିବା ପାଇଁ ଜୀବନର ଯେଉଁ ଆଗ୍ରହ ଓ ଆକାଙ୍କ୍ଷା ଯୁଗେ ଯୁଗେ ମନୁଷ୍ୟକୁ କବିତା-ରାଜ୍ୟକୁ ଆକର୍ଷିତ କରିଛି, ତାର ଏକ ସାର୍ଥକ ଓ ସୁନ୍ଦର ପରିପ୍ରକାଶ ହେଉଛି ଏହି କବିତାଗୁଚ୍ଛ । ଭାରତୀୟ ଶାନ୍ତିବାହିନୀର ଲେଃ କର୍ଣ୍ଣେଲ ଶ୍ରୀଯୁକ୍ତ ଶିବରାମ ଶତପଥୀ ଜାଫନା (ଶ୍ରୀଲଙ୍କା)ରେ, ଯୁଦ୍ଧ ଓ ମୃତ୍ୟୁର ମହାଲୀଳାଭୂମିରେ ଯେଉଁ ଅମୃତର ସନ୍ଧାନ କରିଛନ୍ତି ତାହାର ମନୋଜ୍ଞ ସାରସ୍ୱତ ଉଚ୍ଚାରଣ ହେଉଛି ଏଇ କବିତା । ତେଣୁ କଳ୍ପନାର କାରୁକାର୍ଯ୍ୟ ଅପେକ୍ଷା ବାସ୍ତବ ଜୀବନବୋଧର ଦୀପ୍ତି ଓ ଦ୍ୟୁତିରେ ଏହା ଶାଣିତ ଓ ସୁନ୍ଦର । ସାମରିକ ଜୀବନର ରକ୍ଷତା ଓ ରୂଢ଼ତା ଭିତରେ ଶ୍ରୀଯୁକ୍ତ ଶତପଥୀ ଯେ ଏକ ସରସ କାବ୍ୟପୁରୁଷର ସତ୍ତାକୁ ଅକ୍ଷୁଣ୍ଣ ଓ ଅନାଘ୍ରାତ ରଖି ପାରିଛନ୍ତି, ତାହା କିଛି କମ୍ ମନୋବଳ ଓ ଦକ୍ଷତାର ପରିଚୟ ଦିଏ ନାହିଁ । ତାଙ୍କ ପ୍ରାଣସତ୍ତାର ଏଇ ସରସତା ଓ ଶୁଦ୍ଧତା ଜୀବନର ସକଳ ଉତ୍ଥାନ ପତନ ମଧ୍ୟରେ ଅକ୍ଷୁଣ୍ଣ ଓ ଅବ୍ୟାହତ ରହିବ ବୋଲି ବିଶ୍ୱାସ ।

କବିତାଗୁଡ଼ିକ ବାସ୍ତବଧର୍ମୀ, ସାବଲୀଳ, ସରସ ଓ ଅନୁଭୂତି ଉପରେ ଆଧାରିତ । କବି ଶ୍ରୀଲଙ୍କା ତଥା ଜାଫନାର ବିଭିନ୍ନ ସ୍ଥାନ, ତା'ର ପ୍ରକୃତି, ନଦନଦୀ, ପାହାଡ଼ ପର୍ବତକୁ ଏହି କବିତାଗୁଡ଼ିକରେ ରୂପ ଦେବା ସଂଗେ ସଂଗେ ଯୁଦ୍ଧ କ୍ଷେତ୍ରର ବିଭିନ୍ନ ଅନୁଭୂତିକୁ (ସୁଖ, ଦୁଃଖ, ଆଶା, ନିରାଶା, ସଫଳତା, ବିଫଳତା) କାବ୍ୟାୟିତ କରିଯାଇଛନ୍ତି । ପାଶବିକତା ଓ ହିଂସ୍ରତାର ବାତାବରଣ ଭିତରେ ବି ଏଠି ମାନବିକତା ଓ କମନୀୟତାର ସ୍ୱର୍ଶ ବାରିହୋଇପଡ଼େ ।

''ସୁମନ ସୁଗନ୍ଧ ପରି
ତୁମ ସ୍ମୃତି ଭାସିଆସେ,
ମୋ ମନ କ୍ୟାନ୍‌ଭାସ୍‌ରେ
ଚମ୍ପାକଢ଼ି ଆଙ୍ଗୁଠିରେ
ଆଙ୍କିଦିଅ ଅନେକ ସୁଦୃଶ୍ୟ ।'' (ସୁମନ ସୁଗନ୍ଧ)

କବିତାର ଗନ୍ଧରେ, ଜୀବନର ଛନ୍ଦରେ ଜଣେ ସାମରିକ ଅଫିସର କିପରି ବାନ୍ଧି ହୋଇ ପଡ଼ିଛନ୍ତି ଏହି କବିତାଗୁଡ଼ିକୁ ନ ପଢ଼ିଲେ, ତାହା ବୁଝିହେବ ନାହିଁ । ମୁଁ ଜାଣିବାରେ, ବୋଧହୁଏ ଶିବରାମ ଏକମାତ୍ର ଓଡ଼ିଆ ସାମରିକ ଅଫିସର, ଯେ କି ଜଣେ କବି । ଏ ଦିଗରେ ତାଙ୍କର ସ୍ଥାନ ଓଡ଼ିଶାରେ ଏକକ ଓ ପ୍ରଥମ । ସମର ସହ ସାହିତ୍ୟର ଏହି ସମନ୍ୱୟ ଶ୍ରୀଯୁକ୍ତ ଶିବରାମଙ୍କୁ ଆହୁରି ଯଶସ୍ୱୀ ଓ ଜାଜ୍ୱଲ୍ୟମାନ କରୁ ଏତିକି କାମନା ।

ଜନ୍ମାଷ୍ଟମୀ
୨୩/୮/୮୯

[signature]
ବରଗଡ଼

# ପଦେ ଅଧେ

''ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା ।'' ଅବଲମ୍ବନ ବିନା କବିତା, ବନିତା ଓ ଲତା ତିଷ୍ଠି ପାରନ୍ତି ନାହିଁ । କବିତା ସହିତ ବନିତା ଓ ଲତାର ସାମଞ୍ଜସ୍ୟ ସମ୍ୟକ୍ ଆଲୋଚନା କଲା ପରେ ଅବଲମ୍ବନ ବିଷୟରେ ସାମାନ୍ୟ ଆଲୋକପାତ କରିବି ।

କବିତା, ବନିତା ଓ ଲତା ପରି ନମ୍ର, କମ୍ର ଓ ସଚେତନଶୀଳ । ସୂକ୍ଷ୍ମାତିସୂକ୍ଷ୍ମ ଭାବ ବିନ୍ୟାସ (Fine emotions) ତା ଉପରେ ଯଥେଷ୍ଟ ପ୍ରଭାବ ପକାଇଥାଏ । ଅବଶ୍ୟ ସ୍ତ୍ରୀମାନଙ୍କୁ ଏ ଯୁଗରେ ଅବଳା କହିବା ଅନୁଚିତ, କାରଣ ଶାରୀରିକ ତତ୍ତ୍ୱ ଦୃଷ୍ଟିରୁ ସ୍ତ୍ରୀ ଶକ୍ତିରେ ପୁରୁଷର ସମକକ୍ଷ ହୋଇ ନ ପାରିଲେ ସୁଦ୍ଧା ମନସ୍ତାତ୍ତ୍ୱିକଙ୍କ ମତରେ ବୟସ ତୁଳନାରେ ମାନସିକ ସନ୍ତୁଳନ ବା ପରିପକ୍ୱତା ( Maturity), ସହନଶୀଳତା, ବିବେଚନା, ମନନ ଶକ୍ତି ଓ ଧୃତି (Patience) ଦୃଷ୍ଟିରୁ ସେ ପୁରୁଷଠାରୁ ବହୁ ଉଚ୍ଚରେ । ଏଥିରେ ଦ୍ୱିରୁକ୍ତି କରିବାର କିଛି ନାହିଁ ଯେ ସେମାନେ ସୌନ୍ଦର୍ଯ୍ୟ, ଅଳଙ୍କାର, ବେଶଭୂଷା, ପରିପାଟି ଓ ସାଜସଜ୍ଜା ପ୍ରିୟ ।

କବିତା ମଧ୍ୟ ଠିକ୍ ସେହିପରି । ରସୋଦ୍ରେକ କରିବା ସଂଗେ ସଂଗେ ସୌନ୍ଦର୍ଯ୍ୟ, ଅଳଙ୍କାର, ପରିପାଟି ଓ ସାଜସଜ୍ଜା ଭଳି ସୂକ୍ଷ୍ମ ବିଷୟଗୁଡ଼ିକ ପ୍ରତି ସାର୍ଥକ କବିତା ସର୍ବଦା ସଚେତନ ଥାଏ । ଥରେ ଏସବୁ ସନ୍ତୁଳନ ଭିତରୁ ଗୋଟିକର ମଧ୍ୟ ସାମାନ୍ୟତମ ବ୍ୟତିକ୍ରମ ହେଲେ ସ୍ତ୍ରୀ ଯେପରି ତାର ମନୋମୁଖୀ ଗୁଣରୁ (Moody) ଅମନଯୋଗୀ ବା ବିମନା ହୋଇଯାଏ, କବିତାର ରସସ୍ରାବିଣୀ ଧର୍ମ ସେପରି ବାଧାପ୍ରାପ୍ତ ହୁଏ । ଅବଶ୍ୟ ଆଧୁନିକ କବିତା ଅନେକାଂଶରେ ଗଦ୍ୟମୟ ସ୍ୱଚ୍ଛନ୍ଦ ଛନ୍ଦବିଶିଷ୍ଟ ଓ ଅମିତ୍ରାକ୍ଷର

ଧାରାକୁ ଅନୁସରଣ କରିଥାଏ, ତଥାପି କବିତାର ପ୍ରାଣକେନ୍ଦ୍ର ସରସ ଆଳଂକାରିକ ଓ ଭାବାପ୍ଳୁତ ଥାଏ । ଅବଶ୍ୟ କବିତା କବିହୃଦୟ-ପର୍ବତ-କନ୍ଦର ନିଃସୃତ ଏକ ନିର୍ଝରିଣୀ । ତେଣୁ ଏହାର ଗତି ସ୍ୱଚ୍ଛନ୍ଦ ଓ ସ୍ୱତଃସ୍ଫୂର୍ତ୍ତ । ତେଣୁ କବିତା ସୃଷ୍ଟି ସମୟରେ କବି ଭାବାବିଷ୍ଟ ହେବା ସ୍ୱାଭାବିକ । ସୁତରାଂ ଶବ୍ଦ ଚୟନ ବା ଭାବ ବିନ୍ୟାସ କରିବା ପାଇଁ କବିକୁ ମିନିଟିଏ ମାତ୍ର ସମୟ ଲାଗେ ନାହିଁ । କବିତା ସ୍ୱତଃସ୍ଫୂର୍ତ୍ତ କହିବାକୁ ଯାଇ ପଲ୍ଲୀକବି ନନ୍ଦକିଶୋର ବଳ ମୁକ୍ତ କଣ୍ଠରେ ଗାଇଛନ୍ତି :

ମୋ ହୃଦ କନ୍ଦରୁ ବହେ ଚିନ୍ତା ନିର୍ଝରିଣୀ ।
ହେବ ପ୍ରିୟେ, ତବ ମନ ସାଗର-ସଙ୍ଗିନୀ ?
ଇଚ୍ଛା ହେଲେ ରଖ ତାକୁ ଧରି ହୃଦୟରେ ;
ନୋହିଲେ ବିଲୟ ଲଭୁ ତୃିଷାମ୍ପତି-କରେ ।

ଭାବ ହେଉଛି କବିତାର ଅବଲମ୍ବନ ବା ପ୍ରାଣକେନ୍ଦ୍ର । ଭାବ ଯେତେ ଉନ୍ନତ, କବିତା ସେତେ ଉଚ୍ଚକୋଟୀର ହୁଏ । କୁଟୀରରେ ବସି ଡିବିରିର ସୀମିତ ଆଲୁଅ ଭିତରେ ମଧ୍ୟ ଅନୁଭୂତି, ମାନସିକ ପରିପକ୍ୱତା ଓ ସତଚେତନାକୁ ନେଇ ଖୁବ୍ ଉଚ୍ଚ ଧରଣର କବିତା ଲେଖିହୁଏ । ବୌଦ୍ଧିକ ଚେତନା, ମନନ ଓ ଅନ୍ତଃଦର୍ଶନ ଉଚ୍ଚ ଶୈଳୀର ସାହିତ୍ୟ ସୃଷ୍ଟି କରିବା ପାଇଁ ଅପରିହାର୍ଯ୍ୟ । ପ୍ରଚଣ୍ଡ ଗ୍ରୀଷ୍ମ ଋତୁରେ ସଦ୍ୟ ବର୍ଷା ଅବସାନ ହୋଇଛି । ସଦ୍ୟସ୍ନାତା ଯୁବତୀ ପରି ବୃକ୍ଷଡାଳରେ ଫୁଲଟିଏ ପବନ ସ୍ପର୍ଶରେ ଦୋଳାୟିତ । ସତେ ଅବା ମନ୍ଦ ମନ୍ଦ ହସୁଛି । କବି ଭାବବିଭୋର ହୋଇଉଠେ । ''ଭାବେ ଇଚ୍ଛନ୍ତି ଦେବତା୍'' ନ୍ୟାୟରେ ସରସ୍ୱତୀ ସ୍ୱର୍ଗରୁ ଓହ୍ଲାଇ ଆସନ୍ତି ଓ ସ୍ୱତଃ କବିତାର ସ୍ରୋତସ୍ୱତୀ ବହିଚାଲେ । ଯେପରି କ୍ରୌଞ୍ଚ ମିଥୁନକୁ ବଧ କରିଥିବା ବ୍ୟାଧ ପ୍ରତି ଶୋକାଭିଭୂତ ବାଲ୍ମୀକିଙ୍କ ଅଭିଶାପରୁ ସୃଷ୍ଟିର ପ୍ରଥମ ଶ୍ଳୋକ ଜନ୍ମ ଲାଭ କରିଥିଲା ।

ମା ନିଷାଦ ପ୍ରତିଷ୍ଠାଂ ତ୍ୱମଗମଃ ଶାଶ୍ୱତୀ ସମାଃ ।
ଯତ୍ କ୍ରୌଞ୍ଚ ମିଥୁନାଦେକମବଧୀଃ କାମ-ମୋହିତମ୍ ॥

ଶ୍ଳେଷାର୍ଥରେ ଏହା ଭଗବାନ ବିଷ୍ଣୁଙ୍କ ପ୍ରାର୍ଥନା । ହେ ମା-ନିଷାଦ (ଶ୍ରୀନିବାସ, ଲକ୍ଷ୍ମୀପତି) ତୁମେ ଶାଶ୍ୱତୀସମା (ଚିରକାଳଯାଏ) ପ୍ରତିଷ୍ଠା ଲାଭକର । ଯେହେତୁ ମୈଥୁନାସକ୍ତ କ୍ରୌଞ୍ଚ (ରାବଣକୁ) ବଧକଲ । ବୋଧହୁଏ ଭାବାଳଙ୍କାରର ସୃଷ୍ଟି ମଧ୍ୟ ଏ ଶ୍ଳୋକରୁ ହୋଇଛି ।

ରସୋତ୍ତୀର୍ଣ୍ଣ କବିତା ସୃଷ୍ଟି ଦୃଷ୍ଟିରୁ Oliver Goldsmithଙ୍କ The Village School Master କବିତାଟିକୁ ବିଚାର କରାଯାଉ । ଗାଁ ଚାଟଶାଳୀର ଅବଧାନ ଏ

କବିତା ପାଠକଲାମାତ୍ରେ ଅନ୍ତଃଚକ୍ଷୁରେ ଜଳଜଳ ଦେଖାଯାଉଛନ୍ତି । ଆମେରିକା ହେଉ, ୟୁରୋପ ହେଉ, ଅଷ୍ଟ୍ରେଲିଆ ହେଉ ବା ଏସିଆ ହେଉ, ପୂର୍ବ କାଳରେ ସ୍କୁଲ ଶିକ୍ଷକଙ୍କ ଅବସ୍ଥା ଏକା ଥିଲା । ସ୍ଥାନ, କାଳ, ପାତ୍ର ଭେଦରେ ସାମାନ୍ୟ ତାରତମ୍ୟ ବ୍ୟତୀତ ସାଧାରଣ ରୂପରେଖ ପ୍ରାୟ ଏକା । ଗ୍ରାମବାସିମାନେ ମଧ୍ୟ ସେପରି ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଥିଲେ । ତେଣୁ କବିତାଟି ପାଠକଲା ମାତ୍ରେ ୧୯୬୦ର ପୂର୍ବ ଗ୍ରାମ ଶିକ୍ଷକମାନଙ୍କ ଚରିତ୍ରଟି ସ୍ୱତଃ ସମ୍ମୁଖରେ ଉଦ୍ଭାସିତ ହୋଇଉଠେ । ବ୍ୟଙ୍ଗ ରଚନାରେ (Satire) କବି କେତେ ସିଦ୍ଧହସ୍ତ ଥିଲେ, ତାହା ସ୍ପଷ୍ଟ ପ୍ରସ୍ଫୁଟିତ ହୋଇଛି କବିତାଟିରେ ।

ମୋର କବିତାଗଡ଼ିକ ସେପରି ସ୍ୱତଃସ୍ଫୂର୍ତ୍ତ ଓ ଗତି ତାର ଅବାଧ । ଶ୍ରୀଲଙ୍କାର ଜାଫନା ଅନ୍ତରୀପରେ ପ୍ରାୟ ଆଠମାସ ରହଣି ଭିତରେ (୧୭ ଅକ୍ଟୋବର ୧୯୮୭ରୁ ୬ ଜୁନ୍ ୧୯୮୮) ସେଠାକାର ପାଣି, ପବନ, ବୃକ୍ଷଲତା, ଫୁଲ, ପ୍ରାନ୍ତର, ଧାନ କ୍ଷେତ ଆଦି ସବୁ ଯେଉଁ ଭାବୋଦ୍ରେକ କଲା ସେସବୁକୁ ଲିପିବଦ୍ଧ କଲି ଏଇ କବିତା ସଂକଳନରେ । ଗୁଳି ଗୁଳାର ଗର୍ଜନ ଭିତରେ, ଶବଗୁଡ଼ିକର ପଚାସଢ଼ା ଗନ୍ଧ ଭିତରେ, ଜନହୀନ ଜନପଦଗୁଡ଼ିକର ବିଭୀଷିକା ଭିତରେ ମୋତେ ଜୀବନର ସ୍ୱାଦ ଚଖାଇଛନ୍ତି ଏ କବିତା-ବନିତା ।

ମୋ ଅନୁଶାସନରେ ଶତାଧିକ ସୈନିକ ସଦୈବ ଜାଗ୍ରତ ରହି ସ୍ୱୀୟ କର୍ତ୍ତବ୍ୟରେ ଅଟଳ ଥାନ୍ତି । ପ୍ରତ୍ୟେକଙ୍କର ଅମୂଲ୍ୟ ଜୀବନର ଦାୟିତ୍ୱବୋଧ ମୋତେ ବେଳେବେଳେ ଅତିଷ୍ଠ କରି ଦେଉଥିଲା । ସେ ଦୋଦୁଲ୍ୟମାନ ମୁହୂର୍ତ୍ତଗୁଡ଼ିକୁ ରସବଦ୍ଧ କରି ସନ୍ତୁଳିତ ଶୈଳୀରେ ପକାଇଛି ଏ କବିତାଗୁଡ଼ିକରେ । ତେଣୁ କହିବା ବାହୁଲ୍ୟ ମାତ୍ର, ଏ କବିତାଗୁଡ଼ିକ ମୋର ଅତି ଆଦରର ସଂପତ୍ତି ।

ଜାଫନା ଏକ ସୁନ୍ଦର ସମତଳ ଅଞ୍ଚଳ । ଚତୁଃପାର୍ଶ୍ୱ ସମୁଦ୍ର ପରିବେଷ୍ଟିତ । ଅନେକ ଅଗଭୀର ଜଳାଶୟରେ ଶଫରୀ ସନ୍ତରଣ କରିବା ଦୃଶ୍ୟ ଯାହା ବହୁ କାଳ ପୂର୍ବେ ସୌଭରି ମୁନିଙ୍କର ତପ ଭଙ୍ଗକରି ତାଙ୍କୁ ଗୃହସ୍ଥାଶ୍ରମରେ ପ୍ରବିଷ୍ଟ କରାଇଥିଲା (ବିଷ୍ଣୁପୁରାଣ ଦ୍ରଷ୍ଟବ୍ୟ) ତା ସହିତ ସମତାଳରେ ଧାନ, ଆଖୁ, ଧୂଆଁପତ୍ରର କ୍ଷେତରେ ପବନର ଆକଳନ, ରାତିରେ ସୁନ୍ଦର, ଶୁଭ୍ର, ସୁନୀଳ ଆକାଶରେ ଦେଦୀପ୍ୟମାନ ଗ୍ରହତାରା ମୋତେ ମୁଗ୍ଧ କରିଥିଲା । କଥିତ ଅଛି, ବହୁବର୍ଷ ପୂର୍ବେ କଳିଙ୍ଗ ବଣିକମାନେ ଯାଇ ଏଇ ଇନ୍ଦ୍ରନୀଳ ଦ୍ୱୀପରେ ବସତି ସ୍ଥାପନ କରିଥିଲେ । ବର୍ତ୍ତମାନର ସିଂହଳୀମାନେ ସେମାନଙ୍କ ବଂଶଧାରା ଲାବଣ୍ୟବତୀ କାବ୍ୟର ''ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ....'' ସୂଚନା ଦିଏ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏ କିମ୍ବଦନ୍ତୀରେ ଅବହିତ

ଥିଲେ । ତେଣୁ ଏ ରମ୍ୟ ଦ୍ୱୀପର କମନୀୟ କଳ୍ପନା କରିବାକୁ ତିଳେ ମଧ ପଶ୍ଚାତ୍‌ପଦ ହୋଇ ନାହାନ୍ତି ।

ନିଶ୍ଚିତ ମୃତ୍ୟୁର ଅନିଶ୍ଚିତତା ଭିତରେ ହୃଦୟ ଭିତରୁ ଯେଉଁ ଭାବ ଓ ଭାଷା ନିର୍ଗତ ହୋଇଛି, ସେଗୁଡ଼ିକୁ ସଜିତ କରି ମୁଁ ସୃଷ୍ଟି କଲି ଏ କବିତା ସଂକଳନ 'ଛାପନାର କବିତା' । କେତେ ସ୍ଥାନରେ ଶ୍ଳେଷ, ଅନୁପ୍ରାସ, ଯମକ ଆଦି ଅଳଙ୍କାରକୁ ଆଖିରେ ରଖି କେତୋଟି କ୍ଲିଷ୍ଟ ଶବ୍ଦ ମୁଁ ବ୍ୟବହାର କରିଥାଇପାରେ । ସେଥିପାଇଁ ଗୁଣଗ୍ରାହୀ ପାଠକମାନେ ଏ ଦୋଷ ନ ଧରି କବିତାର ଅନାବିଳ ରସ ଗ୍ରହଣ କରି ଆପ୍ୟାୟିତ ହେବେ ବୋଲି ଅନୁରୋଧ କରେ ।

ପରିଶେଷରେ ମୋର ହେଉଛି ଏହିଟି ପ୍ରଥମ ପ୍ରକାଶ । ଆହୁରି ୨୨ଟି କବିତା ସଂକଳନ ପାଣ୍ଡୁଲିପି ଅବସ୍ଥାରେ ହିଁ ପଡ଼ିରହିଛି । ପାଠକଙ୍କ ଦ୍ୱାରା ପ୍ରୋତ୍ସାହିତ ହେଲେ ସେଗୁଡ଼ିକ ଅବିଳମ୍ବେ ପ୍ରକାଶ କରିବି ।

ଶାଶ୍ୱତ ମୁଦ୍ରଣୀର ସ୍ୱନାମଧନ୍ୟ ସାହିତ୍ୟସେବୀ ଶ୍ରୀ ନୃସିଂହ ଚରଣ ପାତ୍ର ମୋତେ ଯେପରି ଉତ୍ସାହିତ କଲେ ଓ ଦିଗ୍‌ଦର୍ଶନ ଦେଲେ ତାହା ଅବିସ୍ମରଣୀୟ । ତାଙ୍କ ନିଃସ୍ୱାର୍ଥପର ଚେଷ୍ଟା ଯୋଗୁଁ ହିଁ ଏ କବିତାଗୁଡ଼ିକ ଲୋକଲୋଚନ ଗୋଚର ହେଲା । ଏଥିପାଇଁ ସେ ମହାନୁଭବଙ୍କୁ ଧନ୍ୟବାଦ ଓ ପ୍ରଣାମ ଜଣାଉଛି ।

ଚଉତିରିଶଟି କବିତାର ଏ ସୁରମ୍ୟ ସଂକଳନ ଲୋକରେ ଆଦୃତ ହେଲେ ମୁଁ ଧନ୍ୟ ମନେ କରିବି ଓ ମୋ ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ସଂକଳନଟି ଉପସଂହାର କରିଛି କଠିନ ଶବ୍ଦଗୁଡ଼ିକର ସରଳାର୍ଥ ଲେଖି । ପାଠକଙ୍କ ଅଭିମତକୁ ମୁଁ ସାଦରେ ଅଭିନନ୍ଦନ ଜଣାଉଛି ।

ବିଶାଖାପାଟଣା
ତା ୮/୧୨/୨୦୦୦

[signature]

# ସୂଚିପତ୍ର

# ଜାଫନା

ଶ୍ରୀଲଙ୍କା ନଗରୀ ରାଣୀ ଏ ମଉଡ଼ମଣି
କିବା ଚିର ସବୁଜିମା-ଚୀର-ପରିହିତା
ଆନମନା ସହଚରୀ ବା ଅଭିମାନିନୀ
ଜାଫନା ଯାତନା ଅନ୍ତେ କିବା ଶୁଦ୍ଧସ୍ନାତା ।୧।

ତାଳ ନାରିକେଳ ଦ୍ରୁମ ଅବା ରୋମାବଳୀ ;
ନଗହୀନ, ନଗପୂର୍ଣ୍ଣ ପ୍ରଶସ୍ତ ପ୍ରଦେଶ ;
ବିପୁଳ ପୁଳିନ ତାର କି ପୀନ ଜଘନ ;
ସ୍ନିଗ୍ଧ ରଶ୍ମି ଅବଗାହି ଅତି ଶୋଭାବନ ।୨।

ପଲେଲୀ[୧]ରୁ ବାସାଭିଲ୍ଲନ୍[୨] ତହୁଁ ଅଗ୍ରସରି
ପୁନାଲା କାଡୁଭାନ୍[୩] ଦେଇ ଉରେଲୁ[୪] ଆସିଲି ।
ପଥଶ୍ରମେ ବିସ୍ମୃତ ସେ ବିଷ୍ଣୁଙ୍କ ମନ୍ଦିରେ
ଶୋଳ ତହୁଁ ପ୍ରାତେ ଗଲି ଉରୁମ୍ପିରାଇ[୫]କୁ ।୩।

ଦକ୍ଷିଣ-ପୂର୍ବ କୋଣର ପଥ ଅନୁସରି
ଉତ୍ତର କୋପାଇ[୬] ଚତୁଷ୍ପଥକୁ ଉତରି
ଦକ୍ଷିଣ-ପଶ୍ଚିମ କୋଣ ରାଜପଥ ଧାରେ
ପହଞ୍ଚିଲି ମୁଁ ଦକ୍ଷିଣ କୋପାଇ[୬] ସହରେ ।୪।

ଦକ୍ଷିଣ-ପଶ୍ଚିମ କୋଣ ଏହି ପଥେ ପଥେ
ଜାଫନା ଦୁର୍ଗ ଏଠାରୁ ଛ' କିଲୋମିଟର
ଶୁଣିଅଛି ଏ ଦୁର୍ଗରେ ରାଣୀଙ୍କ ପ୍ରାସାଦ
ଅନନ୍ତ ସାଗର ଦୃଶ୍ୟ ଦେଖି ନିର୍ବିକାର ।୫।

ଠିଆ କୋଣ ସୁରକ୍ଷିତ ଗଡ଼ଖାଇ ଆଉ
ଅଭେଦ୍ୟ ପ୍ରାଚୀର ପ୍ରାଚୀ ଉତ୍ତର ପ୍ରତିଚୀ ।
ସୁନାର ଏ ଲଙ୍କାପୁରୀ ହୃଷ୍ଟପୁଷ୍ଟ, ହୃଷ୍ଟ
ବଣିକେ ବାଣିଜ୍ୟେ, ବାଣୀ ଆରାଧି ବାମାଏ ।୬।

ସିନ୍ଦୂର-ବଦନ, ସିନ୍ଧୁସୁତା, ଶମ୍ଭୁସୁତ
ପୁରେ ପୁରେ ପୂଜା ପାନ୍ତି କି ପରମାଦରେ ।
ପରମାଦରେ ଯାହାଙ୍କୁ ଚିନ୍ତି ଭକ୍ତ ଜନେ
କ୍ଲେଶ ଦାରିଦ୍ର୍ୟ ଦୁଃଖରୁ ତରିଯାନ୍ତି ହେଳେ ।୭।

ଘର ଘର ଧନ ଧାନ୍ୟ ପଟ୍ଟ ବସ୍ତ୍ରେ ପୂରି
କୁରେ କୁବେର ବସତି ଅଟେ କି ନଗରୀ ?
ଏତ ତଥ୍ୟ ରାବଣର ଆଗମନ ଆଗୁଁ
ବୈଶ୍ରବଣ ବାସ ବୋଲି ଅଛିଟି ଶ୍ରବଣ ।୮।

ତ୍ରିକୁଟ ପର୍ବତପରେ ମୟଦାନବରେ
ନିର୍ମିତ ଏ ସ୍ୱର୍ଣ୍ଣମୟ ଲଙ୍କାପୁରୀ ପୂର୍ବେ ।
ଚତୁର୍ଦ୍ଦିଗ ସାଗରର ଉତ୍ତୁଙ୍ଗ ତରଙ୍ଗେ
ମର୍କତ ମଣି ବେଷ୍ଟିତ କିବା ନାଗକୁଳେ ।୯।

ହିନ୍ଦୁ, ବୌଦ୍ଧ, ଖ୍ରୀଷ୍ଟିୟାନ୍ ଓ ମୁସଲମାନ୍
ତାମିଲ ସିଂହଳୀ ଆଦି ରହନ୍ତି ସୁଖରେ ।
କଥିତ ଏଥି ତ ପୂର୍ବେ କଳିଙ୍ଗ ବଣିକେ
ଆସି ବସତି ସ୍ଥାପନ କଲେ ସୁନାବିକେ ।୧୦।

ମୁଁ କବି ଜନ୍ମିନି ଲେଖି ବିଭବ କାହାଣୀ
ଦୁଃଖ ଦୈନ୍ୟ କ୍ଲିଷ୍ଟ ଜନମନ ଅଶାନ୍ତିର
ବିକଳ ଆକୁଳ ବିଷେ ଘାରିଦେବା ପାଇଁ ।
ଶାନ୍ତି ଆଶ୍ୱାସନା ହେଲେ ମୋ ଜନ୍ମ ସାର୍ଥକ ।୧୧। ■■

ଦକ୍ଷିଣ କୋପାଇ (ଜାଫନା)
ତା ୨୪/୧୦/୮୭

---
(୧,୨,୩,୪,୫,୬,୭ ଜାଫନା ଉପକଣ୍ଠବର୍ତ୍ତୀ ଗ୍ରାମ ବିଶେଷ ।)
କବିତା 'ଝଙ୍କାର'ର ଡିସେମ୍ବର ୧୯୮୭ ସଂଖ୍ୟାରେ ପ୍ରକାଶିତ ।

# ରେ ବୀର ବାଳକ

କେଉଁ ସିଂହୀ ଦୁଧ ପିଇ ତୁହି ବଡ଼ ହେଲୁ ?
ଛୁଟିଥିଲୁ ତୁ ଛଡ଼ାଇବା ପାଇଁ
ମେଶିନ୍ ଗନ୍ ଦୁଷ୍ମନ୍ ହାତୁ ।
ଉତ୍ତର କୋପାଇର ତୁ ଉତ୍ତମ ବାଳକ ।
ବୟସ ତୋ ମାତ୍ର ଚୌଦ ବର୍ଷ ।
ମୃତ୍ୟୁ ହେଲା ତୋର ଭୃତ୍ୟ ରେ ବୀର ବାଳକ ।
ତୋର ଯଶ ହେବ ଅବିସ୍ମର
ଯାବତ୍ ଧରା ଚନ୍ଦ୍ର ଦିବାକର ।

ପୁରୁଣା ପୋଷାକ ଛାଡ଼ି
ନୂଆ ଲୁଗା ପିନ୍ଧିବାକୁ
ଲୋଡ଼ା ଯହିଁ ଏକମାତ୍ର ଗୁଳି,
ଅପାଂପତି ଗର୍ଜନରେ ଲୁଚିଯାଏ ଯହିଁ
ଅପାଂକ୍ତେୟ ଆତ୍ମାର ଚିତ୍କାର,
ସୂର୍ଯ୍ୟସ୍ନାତ ପାର୍ଥିବ କାନକୁ
ସ୍ତବ୍ଧ କରେ ଯହିଁ
ବୁଭୁକ୍ଷୁ ଶ୍ୱାନର ରବ ;
(ତହିଁ) ଶାଙ୍କୁଚ ପିଠିରେ ବସି
ଶଙ୍କୁକର୍ଣ୍ଣ ସୈନିକର ଦଳ
ଆସୁଛନ୍ତି ; ଜଳସ୍ଥଳ ନଭଚାରୀ
ଗତାଗତ ନ ବିଚାରି ।
ଦେହେ ଦେହେ ମୁହେଁ ମୁହେଁ ଏ ଚିତ୍କାର :
ଆତ୍ମ ସମର୍ପଣ କର ଆକ୍ରମଣକାରୀ ଦଳ । ■■

ଉତ୍ତର କୋପାଇ (ଜାଫନା)
ତା ୨୧/୧୦/୮୭

# ତାଳବନ

ଏ ତାଳବନରେ ବସି
ତାଳବନାପାଳ ବଳ ଚରିତରେ ରସି
କାଦମ୍ବରୀ ପାନେ କଷାୟିତ ନେତ୍ର
ସିତଗାତ୍ର, କିବା ସୁର ସରିତ ସ୍ରୋତ
ଦର୍ଶନେ ନେତ୍ର ପବିତ୍ର ।
ଲଙ୍ଗଳ ମୁନେ ଲଙ୍ଗଳା ଯମୁନା ଆକର୍ଷି
କି ଯଶ ଲଭିଲ ?
ଶୁଭ୍ର ସିଂହନତନ ସିନା କଳା ବୋଲି ହେଲ ।
x x x
ତଳ ବରଡ଼ା ଖସୁଛି
ଉପର ବରଡ଼ା ହସୁଛି ।
ଏତ ଚିରନ୍ତନ ରୀତି ।
ଉପର ବରଡ଼ା ପୁଣି ତଳ ସାଜି
ଅଭ୍ରଂକଷ ଦ୍ରୁମ ସୃଜି,
ରାବଣର ଗର୍ବ, ଅବା
ଦୁର୍ଯ୍ୟୋଧନ ଅଭିମାନ ପରି,
ଅଥବା ସ୍ପୁଟନିକ୍ ସଭ୍ୟତାର ଅଗ୍ରଗତି ପରି... ।
x x x
ମୁଁ ପୁରୁଣାପନ୍ଥୀ ।
ଶୁଖିଲା ତାଳ ବରଡ଼ା ନେଇ
ପୋଥି କରି ସାହିତ୍ୟ ସର୍ଜିବି ।
ଉପର ବରଡ଼ାର ସେ ବିଚିତ୍ର ସବୁଜ ବିନ୍ୟାସ
କେବଳ ଅଳ୍ପ କିଛି ଦିନ ପାଇଁ ।
ସେ ଶୋଭାରେ ବିଭୋର ହେବାକୁ
ମୋର ଏଠି ସମୟ ବା କାହିଁ ? ■■

କାରାବାଡ଼ି ପୂର୍ବ (ବାଡ଼ାମାରୀଚି, ଛାପନା ଅନ୍ତରୀପ)
ତା ୧୪/୧୧/୮୭

# ସମୁଦ୍ର

ସମୁଦ୍ର, ସାଗର, ସିନ୍ଧୁ, ଅବ୍‌ଧି, ନୀରନିଧି,
ରତ୍ନାକର, ଅପାଂପତି, କଂପତି, ଜଳଧି ।
ଆଉ ଏକ ନାମ ନେଇ ଦଶାସ୍ୟର ଦଶା
ଭୋଗିବା ମୋ କାମ୍ୟ ନୁହେଁ; ରାମବାମା କାମେ
ଚୋରାଇନି ପର୍ଣ୍ଣଶାଳୁ ପତି ନ ଥିବାରେ ।
(ବା) ନିର୍ଜ୍ଜର ନାରୀ ନିଜର କରି ନାହିଁ ବଳେ ।୧।

ଚିର ଏ ତରଙ୍ଗ ରାସରଙ୍ଗ ଖେଳା,
ବେଳା ସାଥେ ପ୍ରେମ କରିବାର ବେଳା
ଏକା ଦେଖ ତୁମେ ଜଠର ଅନନ୍ତ ।
କି କର ତର୍ଜ୍ଜନ ଗର୍ଜ୍ଜନ ବ୍ୟାଜରେ ?
ଲୁଚାଇ ପ୍ରେମର ଗତିକୁ ସୂଚାଇ
ଶଶୀ, ଶଚୀପତି ଉଦାହରଣରେ ।୨।

କୁଳୁ କୁଳୁ ମଧୁର ସଙ୍ଗୀତ
ଶୁଣେ ଏଠି ଏକା ଏକା ବାତ ।
ଏ ସରସ ସୁନ୍ଦର ପୁଳିନ
କାହିଁ ପାଇଁ ଆଜି ଜନହୀନ ?
ଶୁକ୍ତି ମୁକ୍ତ ମୁକ୍ତାବଳୀ ଏଠି
ସୂକ୍ତି ପରି ପଡ଼ିଛି ଉତ୍ତାନେ ।୩।

କୁମ୍ଭଜ ଗର୍ବ ମାପକ,
କୌଣପ କୁଳ ରକ୍ଷକ,
ଆହେ ସକଳ ଭକ୍ଷକ,
ବଡ଼ବାଗ୍ନି ସଂଚାରକ,
ଧୀର, ଶାନ୍ତି ପ୍ରଚାରକ,
ଗମ୍ଭୀର, ନତମସ୍ତକ ।୪। ▪▪

କାରାବାଡ଼ି (ପୂର୍ବ), ବାଡ଼ାମାରୀଚି, ଜାଫନା
ତା ୨୨/୧୧/୮୭

---
ଭେଲାଲାଇ ଓ ତେଣ୍ଡାଇ ମନାରରେ (ଜାଫନା ଅନ୍ତରୀପ ଅନ୍ତର୍ଗତ ଗ୍ରାମ) ସମୁଦ୍ର ସଂଦର୍ଶନରେ ।

# ସନ୍ଧ୍ୟାର ଅନ୍ଧାରେ

ଆସନ୍ନ ସନ୍ଧ୍ୟା ଅନ୍ଧାର ପୃଥିବୀକୁ ଛୁଇଁ ଛୁଇଁ ନାହିଁ ।
ଅରୁଣ ବାରୁଣୀ ଶାଢ଼ୀ ଧରି ଟାଣେ ସମୁଦ୍ର ସଂଗମେ ।
ବଳକା ବଳାକାବଳୀ ଉଡ଼ିଚାଲେ ବୃକ୍ଷଶାଖାଶ୍ରୟୀ
ତାରାର ଦୀପାଳୀ ଧରି ରାତ୍ରୀ ଆସେ ସହସ୍ର ସଂଭ୍ରମେ ।୧।

ଆଜି ଯା ଦେଖିଲି ଭ୍ରମେ ସତ୍ୟ କି ସ୍ୱପନ ।
ଚନ୍ଦ୍ରକରେ ବିକଶିତ ପଦ୍ମ ଶୋଭାସଦ୍ମ ।
ଶାନ୍ତନୁଙ୍କ ଗଙ୍ଗା ଅବା କବିର କବିତା ।
ପୁରୁରବା ଉରୁବଶୀ କି ପାଇଲେ ଫେରି ।୨।

ଅନୁପମ ଅନବଦ୍ୟ ମୁଁ ଦେଖିଲି ଶୋଭା ।
ଦେଖି ଦେଖି ନ ପାରିଲି ଆକସ୍ମିକ ଆବିର୍ଭାବ ହେତୁ ।
ଦେଖିଲି କି ଜହ୍ନିଫୁଲ ଏ ଜହ୍ନ ରାତିରେ ?
ଗଣବଣା ଏଣୀ ପରି ଈକ୍ଷଣ ତା ଏଣିକି ତେଣିକି ।୩।

ଚକ୍ଷୁ ନୀର ନୀରବରେ ବହିଗଲା
ନୀଳନଦୀ ଧାର ପରି ।
ସୁଶ୍ୟାମଳ କରିବାକୁ ବେସାହାରା
ସାହାରା ମରୁକୁ ପରା ।୪।

ମୁଁ କହିଲି ରହ ଟିକେ ଦେଖେ ଟିକେ ଭଲକରି ।
ତୁମେ ଅଛ ହସି ବ୍ୟଙ୍ଗେ କହିଲ କି ତହିଁ ପାପ ନାହିଁ ?
ମୁଁ ଧରି ଭିଡ଼ିଲି ଭୁଜେ ଭୁଜଙ୍ଗ ମନ୍ଦରେ ପରି
ସମୁଦ୍ର ମନ୍ଥନ ପାଇଁ; ସୁଧା ପିଇ ଗରଳ ଛାଡ଼ିବି ।୫।

କାହାର ସେ ପଦଶବ୍ଦ; ତ୍ରସ୍ତେ ଦେଲି ଛାଡ଼ି ।
ଲାଳାୟିତ ଲୋଳନେତ୍ରେ ଚାହିଁଲ ରଜନୀ ।
ହତାଶର ଶରଘାତେ ହତବାକ୍ ହୋଇ,
ନ୍ୟଗ୍ରୋଧରେ ପୁଷ୍ପ ଧରେ କହିଲ କ୍ରୋଧରେ ।୬। ▪▪

କାରାବାଡ଼ୀ ପୂର୍ବ (ଜାଫନା)
ତା ୨୫/୧୨/୮୭

# ଗୋ ବାଡ଼ାମାରୀଚି

ଗୋ ବାଡ଼ାମାରୀଚି,
ଅସ୍ତ ରବି ଅରୁଣିମା ଓଷ୍ଠାଧରେ ନେଇ,
ଚଞ୍ଚଳ ଶଫରୀ ପରି ନୟନ ଯୁଗଳ,
ବିଚିତ୍ର  ବୀଚି ବିନ୍ୟାସ ସୁବିସ୍ତୃତ ହ୍ରଦେ
କି ସେ ଆପାଦ ଲମ୍ବିତ କୃଷ୍ଣ କେଶପାଶ ।

ଅତି ପୀନ ତୋ ପୁଳିନ ସଇକତ ଶଯ୍ୟା
ଫେନଚୂଡ଼ ଊର୍ମି ଗୀତେ ସତତ ଝଂକୃତ ।

ଘନରସ ସିକ୍ତ ଅବା ତୋ ଘନ ଜଘନ,
ରୁଣୁ ଝୁଣୁ ନୂପୁରର ସତତ ନିକ୍ୱଣ ।

ଗୋ ବାଡ଼ାମାରୀଚି
ଛାୟା ଜ୍ୟୋତ୍ସ୍ନା ଖେଳେ ଅବା ତୋ ଭାବ ବିଭବ ।
ପବମାନ ସଞ୍ଚାଳନ କରଇ କରଜ ।

ତେଣୁ ରୋମାଳୀ ଉଦ୍‌ଗମ
ତାଳ ଆଉ ନାରିକେଳ ବନ ।

ଇଣି ଇଣି ଭାଷିବାର
ସନ ସନ ସ୍ୱନ ପବନର ।

ଧରିଛି ଆହ୍ଲାଦି ଦୃଢ଼େ, ଦେହମୟ ଗଗନ ପବନ
ଦୋଚାରିଣୀ ପରି ରସି ଶୋଇଛୁ ତୁ ଅଳସେ ଉତ୍ତାନ । ■■

କାରାବାଡ଼ୀ ପୂର୍ବ (ବାଡ଼ାମାରୀଚି, ଜାଫନା ଅନ୍ତରୀପ)
ତା ୨୬/୧୧/୮୭

# ଏ କି ବିଡ଼ମ୍ବନା

-୧-

ନଦୀ ଶୁଖିଲେ କି କରେ ନାଆ ?
କ୍ଷୀର ଶୁଖିଲେ କି କରେ ମାଆ ?
ମୁକ୍ତା ପାଲଟିଲେ କି କରେ ସୀପ ?
ମୁଣ୍ଡକୁ ହାତ ପାଇଲେ କି କରେ ବାପ ?
ଶୀତ ସରିଲେ କି କରେ ତାପ ?
ଧନୀ ହୋଇଲେ କି କରେ ପାପ ?

-୨-

ଏ ସାଗର ସ୍ନିଗ୍ଧ ଆର୍ଦ୍ର ସୁବିସ୍ତୃତ ସଇକତ
ଶଯ୍ୟାରେ ବସି ମୁଁ ଖୋଜେ ଜୀବନ ପାଥେୟ !
ଅସରନ୍ତି ଲହଡ଼ିର ମାଳା ଗଣି ଧନୀ ହେବା
ଲକ୍ଷ୍ୟ ତା ଦକ୍ଷତା ନାହିଁ କାହିଁପାଇଁ ବଳାଇବି ମନ ?

-୩-

ଫସିଲ୍ ସବୁ ସାଉଁଟି
ମୁଁ ପ୍ରାଗ୍ ଐତିହାସିକ ଯୁଗର ଇତିହାସ ଲେଖିବସିଛି ।
କିନ୍ତୁ ଘରେ ମୋ ମା'ର ହାତଖଡୁ
କେବେ ଗଡ଼ା ହୋଇଥିଲା ମୁଁ ଜାଣିନି ।
ବିଭିନ୍ନ ଆକାର ଓ ବିଚିତ୍ର ରଙ୍ଗର
ସୀପ ସବୁ ଆଣି ମୁଁ ଗବେଷଣା କରୁଛି
କିନ୍ତୁ କି ସାର ଦେଲେ ମୋ ବାଡ଼ି ବାଇଗଣ
ଫଳ ଧରିବ ମୁଁ ଜାଣିନି !

ନିଜ ସମୁଦ୍ରେ ବଡ଼ବାନଳ
ପରଘର ନିଆଁରେ ମୁଁ ପାଣି ଢାଳୁଛି । ■■

କାରାବାଡ଼ୀ ପୂର୍ବ (ବାଡ଼ାମାରୀଚି, ଜାଫନା ଅନ୍ତରୀପ)
ତା ୨୭/୧୧/୮୭

# ଶ୍ରୀଲଙ୍କାରେ ଶୀତ ରାତିରେ ବର୍ଷା

ବ୍ୟଭିଚାରୀ ମେଘ ଆକାଶରେ
ଛାଏଁ ଛାଏଁ ଛାଇଯାଏ
ଦିଗନାରୀ ମନେ ଅନ୍ଧାର ଘୋଟାଇ ।
ଅବା, ସିଏ ତସ୍କର ବୃତ୍ତି ଆଚରି
ଚୋରି କରେ ଗଗନର ଗନ୍ତାଘରୁ
ହୀରା, ନୀଳା, ମଣି, ମୁକ୍ତା
ପ୍ରବାଳ ଓ ବଇଡୁର୍ଯ୍ୟ ।

ବିଜୁଳି ଦୀପାଳୀ ହାୟ
ଲିଭିଗଲା ହାୱା ଝୋଂକାରେ
ଲଟା, ବୁଦା, କଣ୍ଟାଭରା
ଏଇ ରାସ୍ତା ଦେଖାଇବା ଆଗୁ ।

ଅହଂକାର-ସମୁଦ୍ରରେ
ଗର୍ବର ଜୁଆର ଉଠେ
ଜୁହାର କରିବା ପାଇଁ
ଶିଷ୍ଟତାର କୂଳେ କୂଳେ ।

ପ୍ରଲୋଭନେ ସାଧାରଣ ଜନମନ ପରି
ନୀଡ଼ଟି ଦୋହଲେ
ପକ୍ଷୀ ଓ ପକ୍ଷିଣୀ ଚିଇଁ ଚିଇଁ କରେ,
ଉଇ ହୁଙ୍କାର ଭିତରୁ ରାମନାମ ପରି ।

ଏଡ଼େ ବଡ଼ ଆଡ଼ମ୍ବର
କେବଳ ଏ ଶୀତ ରାତ୍ରେ
ଦୁଇ ଟୋପା ବର୍ଷା ପାଇଁ । ■■

କାରାବାଡ଼ୀ ପୂର୍ବ ( ଜାଫନା)
ତା ୧୯/୧୨/୮୭

# ବୁଢ଼ୀ ମାଆ

ଘରେ ମୋର ବୁଢ଼ୀ ମାଆ
ସକାଳର ମାଘ ସ୍ନାନ ପରେ,
ଶୀତେ ଥରି ଥୁରୁ ଥୁରୁ,
ଗୋବରେ ଚଉଁରା ଲିପି,
ମୁରୁଜରେ ଆଙ୍କୁଥିବ
ଇନ୍ଦ୍ରଧନୁ, ପାଟପୋକ
କାଦୁଅ, ଛତୁର ସମାରୋହ
ଏ ଶୀତ ଋତୁରେ !)

ଜୟ ଓ ବିଜୟ, କପୋତ କପୋତୀ,
ସ୍ୱର୍ଗକୁ ନିଶୁଣି, (ଅଛିକି ?)
(ବଡ଼ ଲୋକକୁ ଉତ୍ତର ପରି ।)
କାହିଁ ଗଜ, ନକ୍ର, ଚକ୍ର;
ନବରତ୍ନ ମାଳ ଗଳେ ।
ଯେତେ ସବୁ ତା ମନର
ଅବରୁଦ୍ଧ ଅଭିଳାଷ ଓ ଆକାଂକ୍ଷା
ବ୍ୟକ୍ତ କରୁଥିବ ମନ—
ପ୍ରିଜ୍‌ମ୍‌ରୁ ପ୍ରତିସୃତ
ମୁରୁଜର ବର୍ଣ୍ଣାଳୀ ଭିତରେ ।

ମହୁମାଛି; ସଞ୍ଜ ସଞ୍ଜ କରିଛି ସେ ଘର ।
ଗୁଣୁ ଗୁଣୁ ମୃଗୁଣୀ ଜଣାଣ
ଆଉ ଗଜ ନିସ୍ତାରଣ ଗାଇ,
କହୁଥିବ ଆହେ ମହାପ୍ରଭୁ,
ମୋ ପିଲେ ଯେଉଁଠି ଥିଲେ,
(ଶଙ୍ଖରେ ଘୋଡ଼ାଇ, ଚକ୍ର ଆଡୁଖା କର)
କୁଶଳରେ ରଖିଥାଅ ।

ଆଉ ମୋ ମୁଣ୍ଡରେ ସହର
ହାତରେ କାଚ (ବଜ୍ର ପରି) ଥାଇ
ମୋ ସ୍ୱାମୀ ଓ ପିଲେ କାନ୍ଧେଇ
ନଇ ତଢ଼େ, ହାତ ଗୋଡ଼
ଅଚଳ ହେବା ଆଗୁ ପୋଡ଼ିଦିଅନ୍ତୁ ।

ଏଥିପାଇଁ ପରା ତୁ
ମାଟି, ସର୍ବଂସହା, ଜଗଜ୍ଜନନୀ
ଶକ୍ତି, ସରସ୍ୱତୀ, ଅନ୍ନପୂର୍ଣ୍ଣେଶ୍ୱରୀ
ନାମରେ ଲୋକରେ ରହିଅଛୁ ବ୍ୟାପି । ■■

ତା ୨୦/୧୨/୮୭
କାରାବାଡ଼ୀ ପୂର୍ବ

# କାହିଁ ସେହି

ଦିନ ପରେ ଦିନ ଗଡ଼ିଗଲେ
ରବି ସୋମ ମଙ୍ଗଳ ଓ ବୁଧ
ବୃହସ୍ପତି ଶୁକ୍ର ଶନି
ପରେ ପୁଣି ରବି ।

ଯେଉଁ ପ୍ରଶାଖାରୁ
ପତ୍ରଟିଏ ଖସିଗଲା
ସେଠି ଆଉ କି ସଞ୍ଚରେ କିଶଳୟ ?

ଯେଉଁ ବୃନ୍ତଟିରୁ
କୁସୁମଟି ଝଡ଼ିଗଲା
ସେଠାରେ କି କେବେ କଳିକା ପ୍ରକାଶେ ?

ଯେଉଁ ନଈ ସୁଅ
ବହିଗଲା ନମ୍ରୁ ନିମ୍ନତର
ସେ କି ଫେରିଆସେ ?

ଅବଶ୍ୟ ବନସ୍ପତି ଜଗତରେ
କିଶଳୟ ଓ କଳିକାର ଅବକାଶ ନାହିଁ
କି ପୃଥିବୀରେ ଜଳସ୍ରୋତର ଅଭାବ ନାହିଁ । ■■

କାରାବାଡ଼ୀ ପୂର୍ବ (ଜାଫନା) ଶ୍ରୀଲଙ୍କା
ତା ୨୪/୧୨/୮୭

---

ପ୍ରଜାତନ୍ତ୍ରକୁ ପଠାଗଲା ତା ୭/୧/୮୮ରେ

# ଯୁଦ୍ଧ

ଗୁଳି ଗୁଳା ଚାଲେ ଏଠି
ମାଇନ୍ ଗ୍ରେନେଡ୍ ଫୁଟେ ।
ଅପ୍ରତିହତ ଗତି ରାକ୍ଷସ ଶରୀର—
ଟେଙ୍କ୍ ଏଠି କୋଡ଼ିଏ ଫୁଟ
ଉପରକୁ ଉଠି ଖଣ୍ଡ ଖଣ୍ଡ ହୁଏ ।
ରକ୍ତର ଝରଣା ଛୁଟେ ଉତ୍ସକୂପ ପରି ।
କାହିଁ ଶବ ଶିବା ଖାଏ ।
ବାମେ ଶୁଭ, ଦଶା ବାମରୁ
ଏ ଅଶୁଭ । କେହି ଅବା ମରୁ
ଘୋର ରବେ କାନ ସ୍ତବ୍ଧ କରେ ।
କାହିଁ ବା ସ୍ଫୀତ କବନ୍ଧ[୧]
ସହସ୍ର କୃମିର ଖାଦ୍ୟ ହୁଏ ।
କାହିଁ ବା ନର କଙ୍କାଳ
ଠିଆ ବଜ୍ର ସୃଜିବାକୁ[୨] ।

କ୍ଷେତର ଶସ୍ୟସମୂହ
ଆତଙ୍କରେ ଉଠନ୍ତି ଶିହରି ।
ତାଳ ଆଉ ନାରିକେଳ
ଶତପତ୍ରୁ ବରଷେ ଲୋତକ ।
କଦଳୀ ତରୁ କମ୍ପଇ
ଯେଣୁ ରଂଭା ସମ ସ୍ପର୍ଦ୍ଧୀ
ବିପରୀତ ରମ୍ଭା ଉରୁ
ଜାନୁ ଜଙ୍ଘ ଉପମା ବିସ୍ମରି ।
ବିପରୀତ ସତ ଏତ
ଯେଣୁ ଭାରଂ କେବଳ ମହୀର ।

ଆତ୍ମା ଦେହୁ ନିକାଳିବା
ଏଠି ନୀତି, ନିତି ଦନିରାତି ଖେଳ ।
ମଣିଷର ମୂଲ୍ୟ ନାହିଁ ଯହିଁ
ସେଠି ମାନ ଅଭିମାନ କାହିଁ ?
ତଥାପି ଏଠି ମୁଁ ମୁଣ୍ଡେ ପିନ୍ଧି ହେଲ୍‌ମେଟ୍
ତା ଉପରେ କେମୋଫ୍ଲେଜ୍ ନେଟ
ମୋ କର୍ତ୍ତବ୍ୟ ଅନୁସରି ରବି ରଶ୍ମି ପରି
ଶସ୍ତ୍ର ହାତେ ଧରି ଚାଲିଛି ଦୁର୍ଗମ ପଥେ
ଶାସ୍ତ୍ର ସାଥେ ଗୀତା ଆଉ ରାମାୟଣ ଗାଇ
ଏକା କୀର୍ତ୍ତି ନାମ ଯଶ ପାଇଁ । ■■

କାରାବାଡ଼ୀ ପୂର୍ବ (ଜାଫନା) ଶ୍ରୀଲଙ୍କା
ତା ୨୪/୧୨/୮୭

(୧ ଶିରହୀନ ଶରୀର)
(୨ ଦଧୀଚି ଅସ୍ଥିରେ ବଜ୍ର ତିଆରି ହୋଇଥିଲା ।)

# ହେଲିକପ୍ଟରରୁ ଜାଫନା

ପଲେଲି[୧]ରୁ ବାହାରିଲି ବାହା ଟେକି,
ହେଲି ହେଲିକପ୍ଟର ଆରୂଢ଼ ।

ଘୂର୍ଣ୍ଣାୟମାନ ବିଶାଳ ପଙ୍ଖାଟି
ଲଘୁଚାପ ସୃଷ୍ଟିକରି ଉଡ଼ାଇଲା ଚିଲ ପରି ।

ପ୍ରଥମେ, ଆଗ୍ନେୟ କୋଣେ
ବାଲିକମାମ୍[୨] ଅତିକ୍ରମି ଗଲି କାଇଟ୍[୩] ଦ୍ୱୀପ ।

ଜଳସ୍ଥଳ ଶାଦ୍ୱଳ ଏ ଚିତ୍ର;
କାହିଁ ଶ୍ୱେତ କାହିଁ ରକ୍ତ ମୃତ୍ତିକାର
ବିଚିତ୍ର ବିନ୍ୟାସ ।

ଜଳେ ଗୁଳ୍ମ ଶଇବାଳ; ପଖାଳଇ
କେଶ କିବା କେଉଁ କୁମାରୀ ଗ୍ରାମର ।
ପବିତ୍ର ତା ତନୁ ଅତନୁ ଛୁଇଁନି
ତେଣୁ କି ଏତେ ନିର୍ମଳ ?

ସେଠାରୁ ପଶ୍ଚିମମୁଖୀ ମୋର ଯାନ
ସାଗରର ତୀରେ ତୀରେ, ଜାଫନା ଦୁର୍ଗ ଉପରେ
ଉଡ଼ିଗଲା ନଭଦ୍‌କୁଲି[୪]କୁ ।

କାହିଁ ଅଗଭୀର ଜଳ ତଳେ ସ୍ଥଳ ଶୋଭା
ନିନ୍ଦେ ଝୀନବାସ ପରିହିତା ପଡ଼ୋଶିନୀ ନାରୀ ମନଲୋଭା ।

କାହିଁ ବା ସବୁଜ ଶାଳୀ ଶସ୍ୟକ୍ଷେତ ହିଡ଼ ବିଭାଜିତ
ପିନ୍ଧିକି ଶୋଇଛି ଶାଳୀ ଶାଢ଼ୀ ଚେକ୍ ହରିତ ।

ସାଗରର ଅବିଶ୍ରାନ୍ତ ଫେନଚୂଡ଼ ଉର୍ମିମାଳା କିବା
ବେଳାଚାରୀ କ୍ଳାନ୍ତ ଶ୍ରାନ୍ତ ପଥିକକୁ କରଇ ଆହ୍ୱାନ

ବାରେ ବାରାଂନିଧି ବାରିରେ ବା ଅବଗାହି
ନାଶିବାକୁ ଏ ପାର୍ଥିବ ପାପ ତାପ ?

ତହୁଁ ଗଭାକଛେରୀ[୫] ଓ କୋଡ଼ି କମାମ୍[୬] ଦେଇ
ମୁଁ ଉଡ଼ିଲି ଦକ୍ଷିଣ ବକ୍ର ପୂର୍ବ ପଥେ
ଏଲୁଥୁମାତୁଭାଲ[୭], ଇଆକାଚ୍ଛି[୮] ଉର୍ଦ୍ଧ୍ୱେ ।

ଏଲିଫେଣ୍ଟ ପାସ୍‌ରେ ପହଞ୍ଚିବା ପୂର୍ବୁ
ନିମ୍ନକୁ ଦେଖି ମୁଁ ଭାବେ ହୋଇଲି ନିମଗ୍ନ ;
ସୁଗଭୀର ସଲିଳରେ ସୁଖେ ଯଥା ମୀନ ।

ପାଦପାକୀର୍ଣ୍ଣ ଭୂଭାଗ
ଭୂଭୃତ ହୀନରୁ ବନ୍ଧୁରତା ହୀନ ।

କିନ୍ତୁ ଠାଏ ଠାଏ ଲାଲ ଟାଇଲ୍ ଛାତ,
କେଉଁଠି ବା କ୍ଷୁଦ୍ର ଜଳାଶୟ,
ଛିଟ ଚୀନ ସିଲ୍କ ଶାଢ଼ୀ ଛଟା ଉକୁଟାଏ ।

ଅବା ପାଟ ହାତୀ ଶୁଣ୍ଢେ
ହୀରା ନୀଳା ପ୍ରବାଳର ଝରା ।

ଏଠାରେ ଭୂଭାଗ ଲମ୍ବିଅଛି ସମୁଦ୍ରକୁ
ହାତୀ ଶୁଣ୍ଢ ପରି ବାଡ଼ାମାରୀଚି[୧୦]ରୁ ।

ଏ ହାତୀ ମସ୍ତିଷ୍କ
ଭେଲ୍‌ଭେଟି ତୁରାଇ[୧୧] ଓ ପଏଣ୍ଟ ପେଡ୍ରୋ[୧୨]
ଆଉ ଏହା ମୁଖ ଜାଫନା ଦୁର୍ଗ,
କାଇଟ୍ ଦ୍ୱୀପ କର୍ଣ୍ଣ ଦୁଇ
ଆଉ ଏ ହାତୀର ତନୁ
ପୂତ ନୀଳ ଅଗାଧ ସାଗର ।

ସେଠାରୁ ଐଶାନ୍ୟ କୋଣେ
ବାଡ଼ାମାରୀଚି ଲାଗୁନ୍ ଉପରେ

ମୁଁ ଦେଖିଲି ଅପରୂପ ଶୋଭା
ପବନର ଅଙ୍ଗ ଲାଗି ହ୍ରଦରେ ତରଙ୍ଗ ।

ସ୍ତବ୍ଧ ବିସ୍ମିତ ମୁଖରେ କିବା ସ୍ମିତ ହାସ ?
ଅନ୍ତରୀପ ଅନ୍ତର୍ଗତ ଅଟ୍ଟାଳି ପ୍ରାଚୀର
''ଅର୍ଥ ଅନର୍ଥର ମୂଳ''ଭାସ୍ୱର ସ୍ୱାକ୍ଷର ।

ତାଳ ଆଉ ନାରିକେଳ ମହୀରୁହାବଳୀ
ଏ ଶୋଭା କର୍କଶ ଉଚ୍ଚ ପ୍ରହରୀ ସୁବଳୀ ।

ଓହ୍ଲାଇଲି ଉଡ଼ି ପୂର୍ବ କାରାବାଡ଼ୀ[୧୩]
ମାଟିରେ ମୁଁ ପାଦ ଥାପି ଦେଖିଲି ଊର୍ଦ୍ଧ୍ୱକୁ
ବୃତ୍ତାକାର ଖଣ୍ଡ ଖଣ୍ଡ ସିତ ମେଘାବୃତ
ଆକାଶଟା ଫୁଲକୋବି କିଆରି ସାଜିଛି ।
ଅବା କେଉଁ ପ୍ରବାସୀ ମନର
ବିକ୍ଷତ ବିକ୍ଷିପ୍ତ ଭାବନାର
ଗୁଡ଼ିଏ ଅଲୋଡ଼ା ଆଲୋଡ଼ନ ।

କେତେ କେତେ ତୁ ବିଚିତ୍ର ଚିତ୍ରପଟ ଆଙ୍କି
ଅହି ତଳପେ ଅନନ୍ତେ ଶୋଇଅଛୁ ବଙ୍କି । ▪▪

ଉରୁମିରାଇ (ଜାପାନ)
ତା ୨୭/୧୨/୮୭

---

(୧ ଠାରୁ ୧୩ ଜାପାନ ଅନ୍ତରୀପ ଅନ୍ତର୍ଗତ ସ୍ଥାନସମୂହ ।)

# କାରାବାଡ଼ୀ

ଏ ବିଶାଳ ସମତଳ ଭୂପ୍ରଦେଶ
ତରୁ ତୃଣ ଗୁଳ୍ମାବୃତ
କି ଅବଗୁଣ୍ଠନବତୀ ନବୋଢ଼ା ଯୁବତୀ ।

ସବୁଜ ଏ ଶସ୍ୟରାଶି କିବା ତାର ହାସ ?
ଆଉ ଏ ଅବନୀ ବନୀ
ଯୋଗେ କିବା ନବ ଯଉବନୀ,
ମଧୁରେ ସଙ୍ଗୀତ ଗାଏ ଏ ପବନ ସ୍ୱନେ ।

ଏ କର୍କଶ ତାଳ ତରୁ ଦେହେ
ଶାଗୁଆ ମଲାଙ୍ଗ ଫୁଲ ଫୁଟେ !
କି ଅବା ସୈନିକ ହୃଦେ କବିତା ଉଚ୍ଛ୍ୱାସ ।

ଦୀର୍ଘ ଜଟା ଶ୍ମଶ୍ରୁଧର ମୁନି ପରି
ବରଗଛଟିଏ ଠିଆ ଶୀତତାପ ବର୍ଷା ସହି ।

କାମ ପୁଷ୍ପହୀନ୍ଙ୍କ ତପ ସାଧେ ସ୍ୱର୍ଗ ସଧେ ?
ତା ମୂଳରୁ ଫଳ ଗୋଟିଏ ଗୋଟାଇ
ଚାଲିଛି ଗୁଣ୍ଡୁଚି ମୂଷା ଡେଇଁ ଡେଇଁ
ପୁଷ୍ପବାସଲୋଭୀ ପୁଷ୍ପାବାସ ତୁଳିପ୍ ଡାଳକୁ ।

ଶ୍ୱେତାଙ୍ଗନା ପରି ପ୍ରଶସ୍ତ ଶାଖା ବିସ୍ତାରି ।
ଠିଆ ଏଠି ଉଇକାଲପଟସ୍ ସୁନ୍ଦରୀ,
ବପୁରଙ୍ଗ ଚହଟାଇ
ହିରୀ ଦର ଦୂରେ ପରିହରି ।

ହାରେମ୍ ପ୍ରହରୀ ପରି କାହିଁ ତାଳବନ
ତନୁରେ ତା ଖଞ୍ଜି ଅସ୍ତ୍ର ଶସ୍ତ୍ର ବର୍ମ
ପ୍ରାଂଶୁ ଠିଆ ନିର୍ବିକାରେ ।

ତନୁରେ ଲହଡ଼ି ଭାଙ୍ଗେ କେତେ ଲତା
ଯୌବନର ଉଦ୍ଦାମ ଆବେଗେ ।

ବ୍ୟାପ୍ତ ଅର୍ଦ୍ଧଗୋଲାକାର ପିଧାନ ଗଗନ
ତହିଁ ଧଳା ମେଘ ଭାସେ ।

ଛାୟାଲୋକ ଚିତ୍ର ଶାଟୀ
ଉଡ଼େ କିବା ସମ୍ଭୋଗ ଆବେଗେ ?
ଶିହରିଉଠଇ ଧରା
କିନ୍ତୁ କେବେ ଦିଏ ନାହିଁ ଧରା ।

ଲୋକ ଲଜ୍ଜା ଅପମାନ ପାଇଁ ଡର ନାହିଁ ।
ଅନ୍ତଃସତ୍ତ୍ୱା ହେଲେ ପୁଣି ଉପୁଜେ ଅନର୍ଥ
ସୃଷ୍ଟି ହେବ ଉପଗ୍ରହ ।

ରସସିକ୍ତ ସୌମ୍ୟପ୍ରସୂ ଏ ମୃତ୍ତିକା
କିବା ସରସ କବିତା ?
ସୁଷମା ଏହାର ଚିର ସହଚରୀ
ଋଦ୍ଧି ସିଦ୍ଧି ସଦା ପାଶେ ପରିଚାରୀ ।

ଦେଖିଲି ଅନତିଦୂରେ ଅଗଭୀର ପାଟ
କୋଣାର୍କ ଶିଳ୍ପର ଠାଣି ହାତେ କି ଦର୍ପଣ ?
କିବା ବୀରଦତ୍ତ ରଜତ ଫଳକ
ସମ୍ଭୋଗ ସନ୍ତକ ?

ବରଷାର ଅବସାନେ ବାରି କ୍ଷୀଣତର
ତେଣୁ କିବା ଜଳକାକ, କାରଣ୍ଡବ
ହଂସ ବକ ବତକର ଦୁଃଖ ?
ଲୋଳ କେକୀ ହେଳି, ଠିଆ ଯହିଁ ତହିଁ ।

ଗର୍ବେ ଠିଆ ରତିରଣେ କି ଅପରାଜିତା,
କୂଳେ କୁଞ୍ଜେ ସିତ ଅସିତ ଅପରାଜିତା ।

କିବା ରାଧାକୃଷ୍ଣ (ନା), ଗୋପିନୀ କାହ୍ନର
ମହାରାସ ମହା ଆଡ଼ମ୍ବର ।

ନିମ୍ବ ଆମ୍ବ ନାରିକେଳ
ନିଜ ନିଜ ଗୁଣ ଅନୁଯାୟୀ
ଲୋକେ ଲୋକେ ପ୍ରଶସ୍ତିକୁ ଗାଇ
ତରୁକୁଳ ଠିଆ ଯହିଁ ତହିଁ ।
ଏ କୋମଳ ସ୍ନିଗ୍ଧ ରବିରଶ୍ମି
ଛୁଇଁ ଛୁଇଁ ଯାଏ ତରୁବନ
ଅବାଞ୍ଛିତ ଅନାହୂତ ଅତିଥିର ପରି
ଶୈତ୍ୟର ପ୍ରକୋପ ଯେଣୁ ଏଥି ନାହିଁ ।

ତାଳପତ୍ର ଆତପତ୍ର ଶିରେ କେତେ ଧରି
ବସିଛନ୍ତି ଠାଏ ଠାଏ ବନ୍ନସି କଣ୍ଟା ଧରି ।

ତାଳ ବରଡ଼ାରେ ଘୋଡ଼ା କୁଟୀରକୁ ସ୍ପର୍ଦ୍ଧି,
ତାଳ ବରଡ଼ାରେ ଘୋଡ଼ା କୁଟୀର ନିବାସୀ ।

ବିହଗ ବିକଳ ତୋଳେ ଡାକେ ଡାଳେ ବସି
ଆସ ପ୍ରିୟତମା ପାଶେ;
ମୋ ମନର ବନହଂସୀ
ଟିକେ ବସି, ହସି କଥା ହେବା
ଡେଣାରେ ଡେଣାକୁ ଯୋଡ଼ି ଆକାଶେ ଉଡ଼ିବା
ଚଞ୍ଚୁରେ ଚଞ୍ଚୁକୁ ଯୋଡ଼ି ଆହାର ବାଣ୍ଟିବା ▪▪

କନକ ସେନ୍ଥୁରାଇ (ଜାଫନା)
ତା ୨୫/୧୨/୮୭

---

ଜାଫନା ଅନ୍ତରୀପ ଅନ୍ତର୍ଗତ ସ୍ଥାନ ବିଶେଷ । ଏଠାରେ ବର୍ଷାଋତୁ ଅଗଷ୍ଟରୁ ନଭେମ୍ବରଯାଏ । ଜାନୁୟାରିରେ ରାତିରେ କେବଳ ସାମାନ୍ୟ ଆରାମଦାୟକ ଶୀତ ଅନୁଭୂତ ହୁଏ । ଦିବସର ରବିରଶ୍ମି ଅବାଞ୍ଛିତ, ଯେଣୁ ସ୍ୱେଦୋଦ୍ରେକକାରୀ ସନ୍ତାପଜନକ ।

# ଟୁଲିପ୍ ଫୁଲଟି ହାୟ !

ଶାନ୍ତିର ସାରଥି ତୁମେ
ଭାରତୀୟ ଶାନ୍ତି ରକ୍ଷା ସେନା
ମାନ୍ଦ୍ରାଜ ଇଞ୍ଜିନିୟର ଦଳର
ମିଷ୍ଟଭାଷୀ ହେ ପ୍ରଖ୍ୟାତଯଶା !
ଆକସ୍ମିକ ପ୍ରଭଞ୍ଜନ ଯୋଗେ
ଅକାଳରେ ବୃନ୍ତଚ୍ୟୁତ ହେଲ
ସଉରଭ ଉକୁଟାଇ
ଅଳ୍ପ କେତେ ମୁହୂର୍ତ୍ତର ପାଇଁ ।୧।

ସେ ଦୁର୍ଦ୍ଦିନ କୁକ୍ଷଣରେ
ଦରଆଉଜା ଦରଜା ଠେଲି
ଭିତରକୁ ଯେବେ ପଶୁଥିଲ
ଶତ୍ରୁ ଠାବ କରିବାକୁ ।
ସଦ୍ମରେ ନିହିତ ଛଦ୍ମ ବୁବୀଟ୍ରେପ୍‌ଟିରେ
ତୁମେ ନିହତ ହେଲ ।
ସାଥେ ତୁମର ଜେସିଓ ମୁକୁନ୍ଦ ରାଓ
କୌତୁକରେ ତା ପ୍ରାଣ ଗଲା ।
ଏ ବଡ଼ ଅଦ୍ଭୁତ ନିମିଷକରେ
ଦୁଇଟି ପିଣ୍ଡରୁ ଆତ୍ମା ଅଲଗା ହେଲା ।୨।

ଜନ୍ମ ତୁମର ଜାଫନାରେ
ଅଲିଅଲ ଏକୋଇର ବଳା ।
ମାଆ ଚାହୁଁଥିଲେ—

ଟୁଲିପ୍ ଫୁଲଟି ପରି,
ସୁନ୍ଦର ଓ ସୌରଭଭରା ହେଉ
ମୋ କୁଳନନ୍ଦନ, ମୋ ଜୀବନଧନ ।
ବାପା ଚାହୁଁଥିଲେ—ପୁଅ
ଶିଖ୍ ସମ୍ରାଟ୍ ରଣଜିତ୍ ସିଂହ ପରି  ବୀର ହେଉ ।
ଉଭୟଙ୍କ ଆକାଂକ୍ଷା ସଫଳ କରି
ତୁମେ ବୋଲାଇଲ ଟୁଲିପ୍ ସିଂ ।୩।

ଶେଷରେ ପାଇଲ ତୁମେ ବୀରଗତି
ସମ୍ମୁଖ ସମରେ, ରିପୁର ଯନ୍ତ୍ରରେ
ସେହି ଜାଫନାରେ ।
ବିଧିର ଏ କି ବିଡ଼ମ୍ବନା !
ଏଠି ବ୍ୟୂହ ରଚା ଚାଲେ ।
ସହସ୍ର କୁକ୍କୁଟ ଆଉ
ଶତ ଶତ ଛେଳି ବଳି ପଡ଼େ
ଶାନ୍ତିଦେବୀ ତୃପ୍ତି ପାଇଁ
କାନ୍ତି ଶକ୍ତି ବୃଦ୍ଧି ପାଇଁ
ଭ୍ରାନ୍ତି ଭୁଲ୍ ଦୂର ହେବା ପାଇଁ ।୪।

କାନ୍ଦଇ ଜଗତି ଆଜି
ଜନନୀର ରୂପ ସାଜି
ଉଠ ଧନ ଅନନ୍ତ ନିଦ୍ରା ବରଜି ।
ହିଂସା ଦ୍ୱେଷ ଚାଲିଥିବାଯାଏ
ଚାଲିଥିବ ଆଜି ।
ତହିଁକି କାହିଁକି ବଳି
ପଡ଼ିବେ ନିରୀହ ଯୁବକ ତୋ ପରି ?
ସତରଞ୍ଜର ପଦାତି ପରି ?୫?

ସବୁ ଦେହେ ଶକ୍ତି ଦେଇ
ମର ଦେହ ପୃଥିବୀରେ ଥୋଇ,
ସବୁ ପ୍ରାଣେ ଉନ୍ମାଦ ସଞ୍ଚାରି
ବ୍ୟାପ୍ତ ହେଲ ବିଷ୍ଣୁ ପରି
ଜଳ ସ୍ଥଳ ଅନଳ ଅନିଳ
ଆଉ ସୁବିସ୍ତୃତ ସୁରାୟନେ ।୬। ■■

ପଲେଲୀ (ଜାଫନା)
୩୦/୧୨/୮୭

---

ଭାରତୀୟ ଶାନ୍ତି ରକ୍ଷା ବାହିନୀର ମେଜର ଦୁଲିପ୍ ସିଂଙ୍କର ମୃତ୍ୟୁରେ ।

# ଉଷା

ଉଷା ଆସେ ଅଧଃ ଊର୍ଦ୍ଧ୍ୱେ
ଅହଂକାରୀ ରଜନୀକୁ ପରିହାସ କରି,
ବିଶ୍ୱାସର ବୈଜୟନ୍ତୀ ବିଶ୍ୱେ ଲହରାଇ
ଆଶଙ୍କାକୁ ପରାଜୟ କରି,
ଆଶା ଅରୁଣିମା ନିରାଶାର ବାଲିସ୍ତୂପେ
ବିବିମ୍ବିତ କରି ।

ଋଷି ରୁଚି ପରି
ଏ ରୁଚିର ଓ ନିରାଡ଼ମ୍ବର ।
ଶୁଭ୍ରା ସରସ୍ୱତୀ,
ମୁଖରା ସେ ପକ୍ଷୀ କାକଳୀରେ ।

ତମ ନାଶିବାକୁ
କି ସେ ସୁଦର୍ଶନ ଚକ୍ର ?
ଅବା ବିଷ୍ଣୁ ବ୍ୟାପ୍ତ ଯେଣୁ ।
ଅପ୍ରିୟ ସତ୍ୟର ପରି
ଅନ୍ଧକାର ବନେଇ ଚୁନେଇ
କହିବାର ଢଙ୍ଗ ଛାଡ଼ି
ନିର୍ଭୀକା, ନ୍ୟାୟ ନ ହୁଡ଼ି
ଭଲ ଭୁଲ ସୂଚାଏ ସେ ।
ପୃଥିବୀର ନଗ୍ନ ଶୋଭା
ଦେଖିବାକୁ ଆଗଭର ଅବା ।

ରୂପଜୀବୀ ପରି
କ୍ଷଣେ କ୍ଷଣେ ନୂଆ ନୂଆ ରୂପ ସାଜି
ମୋ ବିରହୀ ଶାନ୍ତ ମନ-ଗଗନରେ
ଟର୍ଣ୍ଣେଡୋ ସରଜେ ।
ଆଉ ମୁଁ ପଢ଼େ
ଆତୁର ରତୁର ଏକ ଅସଂପୂର୍ଣ୍ଣ କାବ୍ୟ । ■■

ଭେଲାଲାଇ (ବାଡ଼ାମାରୀଚି)
ତା ୧/୧/୮୮

# କବିତା

ଆଭରଣ ଆବରଣ ଦୂରେ ପରିହରି
କବିର ମନ-ପ୍ରସୂନ
ଏ କବିତା ସାଜିଛି ହରିଣୀ
ଚାହାଣି ଗତିର ଛନ୍ଦେ
ସୁଚିତ୍ରିତ ମସୃଣ ଶରୀରେ
ନାଭିଜ କସ୍ତୁରୀ ବାସେ ।

ଶିରେ କଳସୀରେ ନୀର ଧରି ଚାଲିବାର ଠାଣି
ନାହିଁ ତା'ଠି ନାହିଁ ପୁଣି ଶ୍ଳେଷ, ବକ୍ରବାଣୀ
ଏକାକ୍ଷର ସିଂହାବଲୋକନ ବା ବିରୋଧାଭାଷ,
ଦତ୍ତ ଚ୍ୟୁତାକ୍ଷର, ବିଲୋମାନୁଲୋମ,
ଚିତ୍ରବନ୍ଧ, ଯମକ, ରୂପକ
ନବରସ ଚଉଷଠୀ କଳା
ଚଉତିଶା, ଚମ୍ପୂ, ଚଉପଦୀ, ଛାନ୍ଦ ଓ ସୋରଠା;
କିନ୍ତୁ କଥା ତାର ଲାଗେ ଖୁବ୍ ମିଠା ।

ସରଳ ତରଳ ତାର ସୁନ୍ଦର ଚାହାଣି
ଅଳ୍ପ ବାସ, କେବେ ଝୀନ ବସନ ଓଢ଼ଣି ।
ଏ ନଗ୍ନ ତନୁରେ ଏତେ ଶୋଭା;
ଭାବଭରା ନେତ୍ର-ବକ୍ତ୍ର-ବିଭା ।
ହରୀ ଦରହୀନ ସ୍ୱଚ୍ଛନ୍ଦ ଗମନ;
ଅନଳ୍ପ ବର୍ଣ୍ଣନାହୀନ ଅଳ୍ପ ମିଷ୍ଟ ଭାଷା ।

ଚର୍ବିହୀନ ଗର୍ବିତ ତା ଠାଣି
ସୁଗଠିତ ଅବୟବ ଶ୍ରେଣୀ ।
ବିଦେଶୀୟ ପ୍ରସାଧନେ ମୁହଁକୁ ସଜାଇ
ଏସେନ୍‌ସର ମୃଦୁ ଗନ୍ଧେ ଦିଗ ଚହଟାଇ
ସିଏ ଆସେ ସ୍ନେହ ଆଉ ସୌନ୍ଦର୍ଯ୍ୟ ପ୍ରତୀକା;
ରୂପ ଗୁଣ ବ୍ୟବହାରେ ତା'ପରି ସେ ଏକା । ■■

ଭେଲ୍‌ଭେଡ଼ି ତୁରାଇ(ବାଡ଼ାମାରୀଚି)
ତା ୫/୧/୮୮

# ସନ୍ଧ୍ୟା

ଉତପ୍ତ ଲୌହ ଫଳକ ପ୍ରାୟେ ଦିଶେ ରବି ।
ତାପେ ଦଗ୍ଧ କରିବାରୁ ଧରା, ପ୍ରାୟଶ୍ଚିତ୍ତ
କରେ କିବା ଆପେ ଦଗ୍ଧ ହୋଇ ବଡ଼ବାରେ ?
ପ୍ରତୀଚୀ ପାଥୋଧି ସ୍ନାନ ପାପ ତାପ ନାଶେ ।
ଚକ୍ରବାକ ଚକ୍ରବାକେ ବିଧୁମୁଖୀ ବଧୂ, ପରିତୋଷି
ଚକ୍ରବାଳ ଆର ପାରି ଉଡ଼ିଯାଏ ରାମଶାପ ସ୍ମରି ।
ଟିଟ୍ଟିଭ ଓ କୁମ୍ଭାଟୁଆ, ରଣୀ, ବଣୀ, ଶୁଆ, କୁଆ
ବକ ଓ କପୋତ ସନ୍ଧ୍ୟାଗମ ଦେଖି ତରୁ ଡାଳେ
ଆଶ୍ରୟ ଲୋଡ଼ିଲେ ;
ସନ୍ଥ ମନେ ସୁଭାବନା ପରି ।

ଜଳଧର ମେଘମାଳା ଓତପ୍ରୋତ
ଦିଗନ୍ତ ଅନ୍ଧାରେ ।
ଅବୈଧ ପ୍ରଣୟେ ଛନ୍ଦା କି ଯମ ଯମୁନା
କ୍ଷଣିକ ଆବେଗ କ୍ଷଣପ୍ରଭା ସୃଜି ?
ଏ ରୂପସୀ ସନ୍ଧ୍ୟା
ପବନ ସଂଯୋଗେ
ହ୍ରଦ ହ୍ରଦେ ଉନ୍ମାଦ ସରଜେ
ବୀଚି ବୀଥି ଯୋଗେ ।

ସନ୍ଧ୍ୟାର ଯମୁନା ନଦୀ,
ତହିଁ ଭାସିଆସେ
ବିସ୍ମୃତିର ଦିଗ୍‌ବଳୟ ଭେଦି
ସ୍ମୃତିର ଦଦରା ନାବ
ଜୀର୍ଣ୍ଣ ଶୀର୍ଣ୍ଣ ପାଲଟଣା ଯହିଁ;
ଆହୁଲା ଓ କାତ ନାହିଁ ।

ରାତ୍ରୀର ସମୁଦ୍ର ଚାହିଁ ରହେ
ଲହରୀ ଉଦ୍‌ବେଗେ
ଯମୁନାର ଆଲିଙ୍ଗନ ପାଇଁ ।
ଗଭୀର ଓ ଗମ୍ଭୀର ଯମୁନା
କିବା ସିଏ ଆନମନା
ଛୁଟେ ନାହିଁ କିନ୍ତୁ ବେଗେ ବେଗେ । ■■

ନେଲିଆଡ଼ି (ବାଡ଼ାମାରୀଚି)
ତା ୯/୧/୮୮

ପ୍ରଜାତନ୍ତ୍ର ସାପ୍ତାହିକୀ ପାଇଁ ତା ୧୫/୧/୮୮ରେ ପଠାଇଲି

# କଳ୍ପନା

ସରଳ ସଡ଼କ ଲମ୍ବିଯାଏ
ଦିଗ୍‌ବଳୟ ଆର ପାରି,
ସ୍ୱର୍ଗକୁ ନିଶୁଣି ପରି ।
ଛାୟାପଥୁ ତାରା ଛିଡ଼େ
ସ୍ୱର୍ଗରୁ ନହୁଷ ପରି ।

ନିଃଶବ୍ଦ ରାତିରେ ଯେବେ
ମୋ ମନର କୋଳାହଳ
ଶାନ୍ତ ହୋଇଆସେ;
ସିଏ ଆସେ ଆକାଶ କୁସୁମ ପରି
କୋମଳ ବାହୁରେ ଅନ୍ଧାର ପହଁରି;
ଦକ୍ଷିଣ ଦ୍ୱୀପରେ
ଯକ୍ଷ ପେଷା ପୟୋଧର ପରି ।

ପଙ୍କଜର ପ୍ରଫୁଲ୍ଲତା ମୁଖେ,
ପାହାଡ଼ୀ ଝରଣା ଛନ୍ଦ ପଦେ,
ଅଙ୍ଗେ ଅଙ୍ଗେ ଫୁଲର ମହକ,
କଣ୍ଠରେ କୋକିଳ ରଭା,
ଦୀର୍ଘ ଦେହେ ବହି
ଜଳ ପ୍ରପାତର ଶୋଭା ।

ମୁଁ ବୁଭୁକ୍ଷୁ ଅଜଗର ପରି
ତାକୁ ଧରେ ଭିଡ଼ି ।
ସିଏ ଏକା କବିର କଳ୍ପନା;
ଏ ଜୀବନ ଶୂନ୍ୟ ତାର ବିନା । ■■

ପଏଣ୍ଟ ପେଡ୍ରୋ (ବାଡ଼ାମାରୀଚି)
ତା ୧୫/୧/୮୮

# ରଶ୍ମି

ସତ୍ୟର ଉଦୟ ହୁଏ,
ନିୟମିତତାର ବିଜୟ ହୁଏ,
ପକ୍ଷୀର ଡେଣାକୁ ଛୁଏଁ
ଯେବେ ସକାଳର ଉଷ୍ମ ରଶ୍ମି ।

ଆଳସ୍ୟର ନିଦ୍ରାଭଙ୍ଗ କରି
ତମିସ୍ରା-ଗର୍ବ-ପର୍ବତ-ପବି ପରି
ଛୁଟି ଆସେ ଆଲୋକ ବେଗରେ
ପବନ ପ୍ରତିସରଣ, ପର୍ବତର ବନ୍ଧନ ନ ମାନି
ପାହାଡ଼ୀ ଝରଣା ଛନ୍ଦେ ଏଇ ରଶ୍ମି;
ଏଇ ସୂର୍ଯ୍ୟ ରଶ୍ମି ।

ମନ୍ଦିରର ଶଂଖ ଘଣ୍ଟା ରବ
କିବା ଏ ରଶ୍ମିର ଭାଟ
ଅରୁଣିମା ବ୍ରୀଡ଼ା ଛାଡ଼ି
କି କରଇ କ୍ରୀଡ଼ା ଲୋଡ଼ି
ଅଜସ୍ର ବୃକ୍ଷ ଶାଖାର
ପରିରମ୍ଭାରମ୍ଭ ?

ଏ ମଜ୍ଜାଥରା ଆସନ୍ନ
ଶୀତର ସନ୍ନିପାତକୁ
ଅବା ଏହା କୋରାମିନ୍ ।
ସଂବେଦନଶୀଳା ସତ
ଶିଶିର ଅଶ୍ରୁ ପୋଛଇ
ଧରା ନେତ୍ରୁ କି ସହସ୍ର କରେ ?

ଉଦାର ହୃଦୟ ରଶ୍ମି ।
ସହଚରୀ ସୁଷମା ସୁନ୍ଦରୀ
ରୂପ ଗୁଣ ଯଶକୁ ବଖାଣି
ବିଚରଇ ସମଗ୍ର ଧରଣୀ ।
ଅଜସ୍ର ପୁଷ୍ପ ଫୁଟାଇ
ରଙ୍ଗ ଉକୁଟାଇ
ସୌରଭ ଛୁଟାଇ
ହସେ ମହୀୟସୀ ମହୀ
ସୁସଂଗତି ପାଇ
ମୋ ମନର ବନହଂସୀ ପରି । ■■

ତା ୧୮/୧/୮୮
ଭେଲ୍ ଭେଡିଡୁରାଇ (ବାଡ଼ାମାରୀଚି)

# ଅରଣ୍ୟ ରୋଦନ

ଶିଶିର ଅଶ୍ରୁ ଝରାଇ
ଶତ ଶତପତ୍ର ନେତ୍ରୁ
କାନ୍ଦେ ଏହି ବନଭୂଇଁ
ପ୍ରଜାପତି ଅହଂକାର
ବର୍ଣ୍ଣ ବିଭାର ବଡ଼ିମା
ଯେଣୁ ତା ଡେଣାରେ ନାହିଁ ।

କୁସୁମ ପରାଗ ରେଣୁ
ଆକାଶରେ ଉଡ଼ିଗଲା ଯେଣୁ
ସୂର୍ଯ୍ୟୋପରାଗର ପ୍ରାୟ
ତନୁ ଦୀପ୍ତିହୀନ ହାୟ !

ଝରାପତ୍ର ଜରାଗ୍ରସ୍ତ
ଶୀତବାତ ହେତୁ ତ୍ରସ୍ତ
ଘନରସ ହୀନ ତନୁ
ବିଟପର ଦିଶଇ ବିବର୍ଣ୍ଣ ।

ଶୀତେ ପକ୍ଷ ଜକଡ଼ିବା ଆଗୁଁ
ଚଟିଆ ଦୁଇଟି
ମୁହୁର୍ମୁହୁ କେଳିରତ
ଦ୍ୱିମହଲା ହର୍ମ୍ୟ ସାଜି ।
ଗୁଣ୍ଡୁଚିର ଚିର ଚଞ୍ଚଳତା
ଏ ନୀରସ ବନ ମନେ
ଆଣିଦିଏ ଶିହରଣ
କରି ଅବସାଦକୁ ହରଣ ।

ଉଠ ତୁ କର୍ମଠ ବୀର
ବନ ଦେହେ ଯଉବନ ଭର,
ଶିଳାଞ୍ଚିତ, ବସନ୍ତ କୁସୁମାକର,
ମକରଧ୍ୱଜକୁ ସେବି ।

ପରରେ କି ମାନ
ବନସ୍ତେ ବା କି ରୋଦନ ? ▪▪

କାରାବାଡ଼ୀ ପୂର୍ବ (ଢାପନା)
ତା ୨୧/୧/୮୮

# ସିପାହୀ

ସିପାହୀ ତୁ ଠିଆ ନିର୍ବିକାରେ
ଘାଣ୍ଟୁ ପରି ମୋର୍ଚ୍ଚା ଅଭ୍ୟନ୍ତରେ ।
ଶୀତ ବର୍ଷା ବାତ୍ୟା କର୍ତ୍ତବ୍ୟରୁ
ବ୍ୟାହତ କି କରିପାରେ ତୋତେ ?
ତୋର ଗୋରା ତନୁ
ରୌଦ୍ର ତାପେ ତମ୍ବା ପାଲଟିଛି ।
ମଥାରେ ତୋ ଶିରସ୍ତ୍ରାଣ,
ଦେହରେ ଅଲିଭ୍ ଗ୍ରୀନ୍
ସୌର ତାପ ଶୋଷକ ପୋଷାକ,
ଧୈର୍ଯ୍ୟ ଆଉ ଶୃଙ୍ଖଳା ପୋଷାକ ।
ଜାଗ୍ରତ କର୍ତ୍ତବ୍ୟରତ
ଗଗନର ତାରା ପରି
ନେତ୍ର ଦୁଇ ଦୀପ୍ତିମନ୍ତ
ଶୋଭା ନିଦ୍ରା ଭୋଗରେ ନିର୍ଲିପ୍ତ ।
ଅବା ଛୁରୀ ଶାଣ ଓ ତୀକ୍ଷ୍ଣତା
ତୋ ଦୁଇ ଆଖିରେ ।
ଲୁହା ସାବଲ ତୋ ବାହୁ
ବାଙ୍କୁରେ ବା ଗୁଳି ବାଙ୍କୁ
ତହିଁ କି ତୁ ନ କରୁ ପରୁଆ ।
ହାତେ ତୋ ମେଶିନ୍ ଗନ୍
ଗର୍ଜନରେ ବିଦାରିବ
ମହୀ ଜଣା ନାହିଁ
ଅବା କେଉଁ ମୁହୂର୍ତ୍ତରେ
ଏ ନିଃଶବ୍ଦ ରଜନୀ ପ୍ରହରେ ।

କଣ୍ଠେ କଟଚିରେ ତୋର
ନାମାଙ୍କିତ ଡିସ୍କ
ପାଦରେ ତୋ କର୍ମଠ ଢରଠ
ଆମ୍ମୁନିଶନ୍ ବୁଟ୍ ।
ବେଳେ ବେଳେ ଚାଲୁ ତୁହି
ମରୁଭୂରେ ମନ୍ଦାକିନୀ ପରି
ମାଇଲ୍ ମାଇଲ୍
ଖାଦ୍ୟ ଆଉ ପାନୀୟ ବିହୁନେ
କାନ୍ଧରେ ଝୁଲାଇ କିଟ୍
ଆଉ ରାଇଫଲ୍
ପଛରେ ପେକ୍ ଢିରୋ ଏଇଟ୍
ଛୋଟ ଝୋଲା ଓ ଉଆଟର ବଟଲ୍ ।

ତୋ ଦେହରୁ ଝାଳ ଟୋପା ଟୋପା
ଯହିଁ ପଡ଼େ ତହିଁ ପଦ୍ମ ଫୁଟେ ।
ବନ୍ୟା ବାତ୍ୟା ବିଭୀଷିକା ଯହିଁ
ଅବା ସନ୍ତ୍ରାସବାଦୀ ଦମନ ପାଇଁ
ସୀମାରେ ଶତ୍ରୁ ସଂକଟ ଯେବେ ପଡ଼େ
ତୋତେ ଦେଶ ଲୋଡ଼େ ।

ଏ ବିଶ୍ୱରେ ସାର୍ବଭୌମ ଗଣତନ୍ତ୍ର
ସ୍ୱାଧୀନ ସନ୍ତାନ
ଗର୍ବେ ଆମେ ଗଲୁ ମୁଣ୍ଡ ଟେକି
ଏକା ତୋରି ପାଇଁ ।

ଏ ଶାଳୀ ସୁରଭି ଯେବେ
ଭରିଯାଏ ଗଗନେ ପବନେ;

ଫୁଟେ ଫୁଲ ରଙ୍ଗ ଉକୁଟାଇ
ତୋ କିଆରୀ, ନଈ, ବନ, କ୍ଷେତ,
ତୋଟା, ଗଛ, ପାହାଡ଼ କି
ମନେ ପଡ଼େ ନାହିଁ ?
ଛାତିକୁ ପଥର କରି
ରହିଅଛୁ କାହା ପଥ ଚାହିଁ ?

କର୍ତ୍ତବ୍ୟର ପ୍ରତୀକ ତୁ
ନିଷ୍ଠା ଆଉ ସହନ ଶକ୍ତିର
ମୂକ ସାକ୍ଷୀ ରେ ସିପାହୀ ;
ଶତ୍ରୁ ଡାକେ ପାହି ପାହି ।

ପ୍ରିୟା ପରିଜନଠାରୁ ଦୂରେ
ଠିଆ ଏଠି ଏକୁଟିଆଟି ରେ
ସାଧୁ ଅବା କି ତପସ
ତେଣୁ ତୁହି ଜଗତେ ନମସ୍ୟ । ■■

ପୁଚ୍ଛରୁ (ଜାପନା)
ତା ୨୩/୧/୮୮

# ବସନ୍ତ ବିଳାସ

—୧—

ଶୀତର କୃତାନ୍ତ ଆସିଛି ବସନ୍ତ
ପଞ୍ଚମୀର ବିପଞ୍ଚୀରେ
ପଞ୍ଚମ ତାନରେ ଗୀତ ଗାଇ
ପୁରଟରେ ପୁଟ ଦେଲା ଦେହେ ।
ସ୍ରୋତସ୍ୱତୀ ସ୍ରୋତ ପରି
ଅମନ୍ଦ ଛନ୍ଦରେ ଚାଲି
ସଞ୍ଚରିଛି ପଲ୍ଲବେ ପଲ୍ଲବେ
ମଳୟର କୋମଳ ପରଶେ,
ବିମଳ ଜଳର କମଳ ବିଳାସେ
ସ୍ନିଗ୍ଧ ସିତ କାଶତଣ୍ଡୀ ହାସେ ।
ନିଦାଘ ଅଗ୍ରଜ ଯେଣୁ,
ବିରହୀକୁ ଅବା ଦହେ ତେଣୁ ।

—୨—

ସହରର ସରହଦ ସେପାରିରେ
ବାଟି କଲବା'ର ବାଟିକାରେ
ବାଟିକ ପ୍ରିଣ୍ଟ ଶାଢ଼ୀ ପିନ୍ଧା ବାଳିକାଟିକୁ
ଦେଖି ମୁଁ ବାଟ ଭୁଲିଲି ।
ବାରମାସୀ ଆମ୍ବଗଛ ତାର ଦିହ
କାହିଁ ପତ୍ର ଫୁଲ ଫଳ ଡାଳ କିଶଳୟ ।
ଶ୍ୟାମ ସୁରଭିତ ସୁଗଠିତ
ସୁସ୍ଥ ସୁଶ୍ରୀ ଅବୟବ ।
କୋଇଲିର କଣ୍ଠେ ନିତି ବସା ।
ତେଣୁ କିବା ହେଲି ଲୋକହସା ?
ମୁଁ ଚାହିଁଲି ଅନିମେଷ ନେତ୍ରେ
କୋଇଲିକୁ ନା ଆମ୍ବ ଡାଳକୁ ?

—୩—

ସନ୍ଦିଗ୍ଧ ମନରେ ସନ୍ତର୍ପଣ ପରି
ତୁମେ ଆସ ନିରାଶାର ସମୁଦ୍ର ପହଁରି ।
ବିଶ୍ୱାସର ଏକାନ୍ତ ପ୍ରଦେଶେ
ଉଲ୍ଲାସର କୁସୁମ ବିକଶେ ।
କଲ୍ଲୋଳ କଳହଂସ କାକଳୀ କଳା
ତୁମଠାରେ ରୂପାୟିତ ଏସବୁ ଯେପରି ।
ନେତ୍ରପ୍ରାନ୍ତେ ସବୁତକ ସବୁଜିମା
ଆଉ ଗାଲେ ପଲ୍ଲବର ପାଟଳିମା ।
ଶ୍ରଦ୍ଧାର ସନ୍ତକ ବହିଥିବା,
ପ୍ରେମ ମୋଦ ମୁଦ ଦିଆ,
ତୁମରି ସେ ଅଧାଖୋଲା ଆଖିର ଚିଠିକୁ
ମୁଁ ପଢ଼ିଲି ବାରମ୍ବାର, ବହୁଥର ।

—୪—

ପତ୍ର ପତ୍ର ଖୋଜଇ ପତତ୍ରୀ ।
ତା ଶାବକ ଗଲା କାହିଁ ?
ପର ଲାଗିବାରୁ
ପର କଲା ମାଆ ଘର ।
ମଳୟକୁ ଖୋଜି ଖୋଜି
ଗଲା ଅବା ଦକ୍ଷିଣକୁ ଡେଇଁ ବିନ୍ଧ୍ୟଗିରି ?
ଫୁଲ ପାଖୁଡ଼ାର ରଙ୍ଗ ବିନ୍ୟାସରେ
ହିତ ନ ଚିହ୍ନିଲା କି ହୋଇ ମୋହିତ ?
ଏ ନୀଡ଼ରେ ଅବା ପ୍ରୟୋଜନ କିସ ?
ଗଗନ ପବନ ଲାଗେ ଯଥା ବିଷ ।
କି ବିଚିତ୍ର, ଯା ପାଇଁ ମମତା ଯେତେ
ସିଏ କରେ ଦୂର ସେତେ ।

ରଜନୀ ଆସିଛି ଆଜି ବହୁ ଦିନ ପରେ
ଅନେକ ପ୍ରତୀକ୍ଷା ପରେ ।
ତା କଜ୍ଜଳ କୁଞ୍ଚିତ କେଶରୁ
ଉକୁଟାଇ ଅମ୍ଲାନ ବଦନ,
କୋମଳ ଶୀତଳ ତାର
କର ଆପି ମୋ ଶ୍ରାନ୍ତ ବପୁରେ,
ଗେଲେ ଗେଲେ ଗୋଲ ଗୋଲ କଥା କହି
ତାର ଚାତୁରୀରେ ମୋର ଧଇର୍ଯ୍ୟ କତୁରି ।
ମୁଁ ଚାହିଁଲି ଆକାଶକୁ
ମେଘ ପଣନ୍ତରେ ମୁହଁକୁ ଲୁଚାଇ
ନବମୀର ଚାନ୍ଦ ଛୁଟେ
ଚଳ ଜଳମୁଚ ବିପରୀତ ଦିଗେ । ▪▪

କାରାବାଡ଼ୀ ପୂର୍ବ (ଜାଫନା) ଶ୍ରୀଲଙ୍କା
ତା ୨୭/୧/୮୮

---

୧-ଶ୍ରୀଲଙ୍କାର ସହର ବିଶେଷ ।

# ପ୍ରେମ କି ଛଳନା

—୧—

ଗର୍ହିତ ଗୃହିଣୀତ୍ୱର ରୌଦ୍ରତାପେ
ଏବଂ ବିସ୍ମୃତିର ବାଲିସ୍ତୂପ ଭିତରେ
ତୁମ ପ୍ରେମର ଚନ୍ଦ୍ରଭାଗା ଲୁପ୍ତ ପ୍ରାୟ ।
ମୋ ପ୍ରେମର ଭଗ୍ନ ମୁଖଶାଳା
କୋଣାର୍କ ଚିରଭାସ୍ୱର
ଶିଳ୍ପକଳା ଆଗେ ।
ଏ ପୀଠ ତ ସଦା ଉଦ୍ଭାସିତ
ପୀରତିର ପ୍ରଥମ କିରଣେ ।

—୨—

ଛଳ ଛଳ ଝରଣାର ଜଳ ପରି
ସେ ଛଳନାମୟ ହାସେ ମୁଁ ଭାସିଲି ।
ବନ୍ଧୁର ବକ୍ଷରେ ମୋ ଅନୁସନ୍ଧାନୀ ହାତ
କି ଖୋଜିଲା ଅମିୟ ହ୍ରଦକୁ ?
ନିର୍ଜନ ବେଳାରେ
ବେଳାର ନୀରବତା
ଅଣହେଳାରେ ଭଙ୍ଗ କରି
ଗର୍ଜନ ବ୍ୟାଜରେ
ସମୁଦ୍ର ତା ଅହଂକାର ସାବ୍ୟସ୍ତ କରେ ।

—୩—

ମୁଁ ଯାହା ଡାକୁଛି ମୁହୂର୍ମୁହୂଃ
ମୁହୂର୍ତ୍ତେ ମିଳନ ପାଇଁ
ବେଳା କୋଳେ ତରଙ୍ଗ ଯେପରି
ହେଳା କୋଳେ ଅଳସୁଆ ପରି

ଭେଳା କୋଳେ ଅବା ସନ୍ତରଣକାରୀ
ସେସବୁ କି ହେଲା
ଅରସିକେ କାବ୍ୟ ଶୁଣାଇବା ପରି ।

—୪—

ଏକ ଆତ୍ମା ଦୁଇ ଦେହ ବହି
ଏକଇ କୁଳାୟ ଦୁଇ ପକ୍ଷୀ ତହିଁ
ଗୋଟିଏ ବିଶ୍ୱାସେ ପ୍ରେମ ଓ ପ୍ରଣୟ ବିହି
ଏକ ମନ ଶାନ୍ତି ତୃପ୍ତି ପାଇଁ
ଏକ ପ୍ରାଣେ ପ୍ରତ୍ୟୟ ଅତ୍ୟୟ ଲିହି
ଏକ ରକ୍ତେ ଶ୍ୱେତ ରକ୍ତକଣିକାକୁ ଥୋଇ
ଏ ସୃଷ୍ଟି ସର୍ଜିବା ପରି
ତୁମେ ମୁହିଁ ଏକ ହୋଇ ହେଲେ ଏତେ ସରି ।

—୫—

ସିଂହଳରେ ସଂଘମିତ୍ରା ଓ ରାହୁଳ କୀର୍ତ୍ତି ପରି
ଉତ୍ତର ଆକାଶେ ଅବା ଧ୍ରୁବ ପ୍ରଦର୍ଶକ
ସପ୍ତ ଋଷି ପରି
ନାଟକରେ ସୂତ୍ରଧର ପରି
ନର୍ତ୍ତକୀର ପ୍ରସାଧନ ପରି
ଅବା ମନ୍ତ୍ରେ ପ୍ରଣବର ପରି
ତୁମେ ମୋର ପ୍ରେମ ସହଚରୀ । ■■

ବାସାଭିଲ୍ଲନ୍ (ଜାଫନା)
ତା ୨୮/୧/୮୮

# ଅହଲ୍ୟା ଉଦ୍ଧାର

ସଜଡ଼ା ସ୍ୱପ୍ନ ସବୁ ଉଜୁଡ଼ିଯିବା ପରେ
ଭାବନାର ଅହଲ୍ୟା
ପଥର ପାଲଟିବା ପୂର୍ବୁ
କାମାତୁର ଇନ୍ଦ୍ର ମୁଁ
ଷଣ୍ଢାତୁର ଶକ୍ତି ଦର୍ପ ନେଇ
ପ୍ରଣୟର କବିତା ସରଜେ ।
ଗୌତମ ଅନ୍ତର୍ଦୃଷ୍ଟିକୁ
ଏଡ଼ାଇ ନ ପାରି
ମୁଁ ସହସ୍ରାକ୍ଷ ସାଜେ ।

ଆଉ ମୋ ପାଷାଣୀ କନ୍ୟା
ମୋ ପ୍ରେମ ପୁଲକ ବନ୍ୟା
ପ୍ରାତଃସ୍ମରଣୀୟା ଧନ୍ୟା
ଅପେକ୍ଷା କରିଛି
ତପୀ ବିଶ୍ୱାମିତ୍ର ସାଥେ
କ୍ରତୁ ରକ୍ଷାକାରୀ ରାମ
ଲକ୍ଷ୍ମଣଙ୍କ ଅରଣ୍ୟାଗମନ ।

କିନ୍ତୁ ସିଏ ଫେରିଯିବ
ଯିଏ ଶାପ ଦେଇଥିଲା
ସେହି ଗୌତମ ପାଖକୁ ।
ଯେଣୁ ସିଏ ପତିପରାୟଣା
ଭର୍ତ୍ତାନୁଗାମିନୀ
ଚିରସ୍ମରଣୀୟା ।

ପୁରୁଷର ଅହଂକାର
ଉଦ୍ଦୀପିତ କରିବାକୁ
ଆଉ ଜାହିର୍ କରିବାକୁ
ନାରୀ ନିଷ୍ପେଷଣା
ରାମାୟଣ ପୃଷ୍ଠାରେ ତ ରଖିଯିବ
ଖାଲି ତା ପ୍ରାର୍ଥନା । ■■

କାରାବାଡ଼ୀ ପୂର୍ବ (ଜାଫନା) ଶ୍ରୀଲଙ୍କା
ତା ୧/୨/୮୮

## ସ୍ମୃତି

କେବେ ତୁମେ ଆସ
ଚାଳିଶ ବର୍ଷର ସମୁଦ୍ରରେ
ବୁଡ଼ୁକି ଲଗାଇ
ଶଂଖ, ସୀପ, ଶାମୁକା, କୋରାଲ
ହାତେ କେତେ ମୁକ୍ତା ଅବା ଧରି
ମୁମୂର୍ଷୁର ମୃତ୍ୟୁ ଅବା
ମୁମୂର୍ଷୁର ନାମ ଜପ ପରି ।

ତୁମେ ଆସ ଦିଗବାସ
ଅପ୍ରିୟ ସତ୍ୟର  ପଥେ ପଥେ
ମୋ ଏକାନ୍ତ ଅଳସ ମୁହୂର୍ତ୍ତ
କେବେ ବା ସରସ କରି ।
ସୁଧା କୁମ୍ଭ ବିନ୍ଦୁଟେ ଝଲକି
କେବେ କୁମ୍ଭମେଳା ସୃଜେ;
ସୁଦୂରପ୍ରସାରୀ କେବେ ଗରଳ ଜାଲକୁ
ପିଇ ମୁହିଁ ନୀଳକଣ୍ଠ ସାଜେ ।
ବାରୁଦର ବିସ୍ଫୋରଣ ପରି
କେବେ ତୁମେ ଚୁର୍‌ମାର୍ କରିଦିଅ
ମନ ପ୍ରାଣ ଦେଇ ଗଢ଼ା
ମୋ ଆକାଶ-ସୌଧ !
କେବେ ତୁମେ ଆସ
ମୋର ପ୍ରତି ଲୋମକୂପ
ଅଗୁରୁ ଚନ୍ଦନ ବାସେ
ଆମୋଦିତ କରିବାର ସଧ ।

ଛାଇଯାଅ ମନେ ମୋର
ନିମିଷକେ ଗୋଟି ଗୋଟି
ଶିବ ଚତୁର୍ଦ୍ଦଶୀ
ସନ୍ଧ୍ୟା ଅନ୍ଧକାର
ବ୍ୟାପ୍ତ ବିହାୟସେ
ଅଜସ୍ର ତାରକା ପରି ।
କେବେ ତୁମେ ଆସ
ପାଲଟଣା ବୋଇତର
ଅନୁକୂଳ ବାତଜାତ
ବ୍ୟଗ୍ରତାକୁ ନେଇ,
ମୋ ଦୁର୍ଗମ ଦୁର୍ଗ ପାଚେରୀକୁ
ଗୋଧି ଲାଞ୍ଜ ଧରି ଲଘିଁ;
ଅବା ସଶସ୍ତ୍ର ପ୍ରହରୀ ସବୁ
ପରାଭୂତ କରି
ତୁମ ସ୍ମିତ ମୋହିନୀ ହସରେ ।

କେବେ ତୁମେ ଆସ
ଅଷ୍ଟମୀ ଜହ୍ନର ନଉକାରେ ବସି
ଜହ୍ନସୁତା ଶୁଭ୍ରତାକୁ ଦେହେ ବହି
ଅମନ୍ଦ ସରାଗେ ମନ୍ଦେ ହସି;
ଭୀମକାନ୍ତ ମଧୁତିକ୍ତ କଟାକ୍ଷ ପାତରେ
ସରଳ ତରଳ ମନ ଜର୍ଜରିତ କରି ।
କୁହ ମୋର କାନେ କାନେ—
ରଜନୀର ଶ୍ୟାମଳିମା,
ଅରୁଣୋଦୟର ପାଟଳିମା ପାଇଁ;
ବ୍ରହ୍ମରାକ୍ଷସ କାହାଣୀ ଶୁଣିବା ପରେ

ଦିପହର ଖରାବେଳେ
ଏକୁଟିଆ ତାଳ ଗଛ ଦେଖି
ମୁଁ ଡରିବା ପରି ।

ତୁମେ ଯେବେ ଆସ
ଭିନ୍ନ ଭିନ୍ନ ପରିଧାନ
ପ୍ରସାଧନେ ତନୁ ମଣ୍ଡି,
ମୋ ମନ ଗବାକ୍ଷ ଦେଇ
ଏ ଅପ୍ରତିହତ ଦକ୍ଷିଣା ପବନ ପରି
ମୁଁ ଶିହରିଉଠେ ।

ମୋ ଆଖିର ଯେତେକ ଲୋତକ
ଅର୍ଘ୍ୟ କରି ଟେକିଦେଲେ ହେଁ
ତୁମଠାରେ ମୋର ଆରାଧନା
ଅପୂର୍ଣ୍ଣ ରହିବ, ସଦା ଅପୂର୍ଣ୍ଣ ରହିବ । ▪▪

ଅଛେଲୁ (ଜାଫନା)
ତା ୧୪/୨/୮୮

# ଗୌତମ ବୁଦ୍ଧ

—୧—

ହଠାତ୍ ପଚିଶ ବର୍ଷ ପରେ
ମୁଁ ଦେଖିଲି ଗନ୍ଧର୍ବ ନାୟକ ।
ସେ ଆଖିର ଚପଳତା
ହଜିଅଛି ସୁନୀଳ ଆକାଶେ ।
ପରଳ ଲେଞ୍ଜରା ଭରା
ଚଉଦିଗ ଦେଖେ ଖାଲି ଜାଲ ।
ହୀରାଦାନ୍ତ କେତେ ଗଲା ଖଣି ଭିତରକୁ
ଆଉ କେତେ କୋଇଲା ସାଜିଛି ।
ବାଳ ସବୁ ଫୁରୁ ଫୁରୁ ପାଉଁଶିଆ ।
ହାତ ଗୋଡ଼ ଶିରା ସବୁ ଗଣି ହେଉଅଛି ।
ହାତ ପାଦ ଥର ଥର ଚାଲେ ବାଡ଼ି ଧରି ।
ସେ ଉଦ୍ଧତ ଅହଂକାର
ମିଶିଅଛି ମହାଶୂନ୍ୟେ,
ସେ ଦର୍ପ ବଡ଼ିମା
ଲୁଚିଅଛି ସାଗର ଗର୍ଜନେ ।

—୪—

ପାଞ୍ଚ ବର୍ଷ ପରେ;
ପିଞ୍ଜରା ହାଡ଼ କି ପଞ୍ଜୁରୀ
ତହିଁ ପକ୍ଷୀ ତହଳ ବିକଳ ।
ଜରଠ ଜଠର ଶୁଷ୍କ ତୁମ୍ବୀ,
ତହିଁର କର୍କଶ ବୀଜ ସବୁ
ମୂଷା ଖାଏ ଅହରହ ।
ଆଖି ମିଳି ମିଳି;
କ୍ରମଶଃ ଅନ୍ଧାର ଆସୁଅଛି ମାଡ଼ି ।

ଶେଜକୁ ତିଳେ ଉଠିବାକୁ ଶକ୍ତି ନାହିଁ
ତହିଁକି ନଜର ନାହିଁ ।
ଏକା ତା ଧିଆନ
କିଂପରି ମରଣ ହେବ ।
ଏ ଦୁଃଖରୁ ତ୍ରାହି ତ ପାଇବ ।

—୩—

ପୁଣି ପାଞ୍ଚ ବର୍ଷ ପରେ
ହଠାତ୍ ଦେଖିଲି
କୋତରା ଅସନା ପଟିଟିରେ
ପଡ଼ିଛି ଗନ୍ଧର୍ବ ନାୟକର ଦିହ ।
ମାଛିଗୁଡ଼ା ଭଣଭଣ ।
କେ କହୁଛି ଘୋଷାଡ଼ି ନେଇ ପୋତିଦିଅ ।
କାଠ କିରାସିନି ପାଇଁ ପଇସା ବା କାହିଁ ?

—୪—

ଅଦୂରେ ଦେଖିଲି
ସନ୍ଥ ରାମଦାସ
ବ୍ୟଗ୍ରେ ଆସୁଛନ୍ତି ଡାକି ରହ ରହ—
ମୋ ବାଡ଼ିରୁ ବାଉଁଶ କାଟ
ମୋ ଢାଳେଣି କାଠ ସବୁ ନିଅ
ପୂଜା ପାଇଁ ଯା ରଖିଛି
କର୍ପୁର ଚନ୍ଦନ କାଠ ଅଗୁରୁ ଓ ଘିଅ
ତାକୁ ମଧ ନିଅ ।
ଚାଲ ମୁଁ ଖୋଳ ଆଉ କରତାଳ ଧରି
କୀର୍ତ୍ତନ କରୁଛି ।
ତାକୁ ନିଅ କାନ୍ଧେ ବୋହି
ମୁହେଁ ହରିବୋଲ କହି ।

ତାର ଆତ୍ମା ଦେଖୁଥିବ
ଅନ୍ତରାଳେ ରହି ।

—୫—

ପଞ୍ଚତିରିଶ ବର୍ଷ ପରେ
ସନ୍ଥ ରାମଦାସ ମୁହଁରେ ଆଖିରେ
ସେ ଶିଶୁସୁଲଭ ଚପଳତା
ସସ୍ମିତ ସରଳ ଭାଷା
ଜୀବେ ଦୟା ପର ଉପକାର
ନିର୍ଲୋଭ ଓ ନିର୍ବିକାର
ନିରଳସ ଆଉ ନିରଙ୍କୁଶ ।
ଦେଖି ସେ ଚଞ୍ଚଳ ଚାଲି ।
ପାଦେ ପଡ଼ି ପ୍ରଣମିଲି । ■■

କାରାବାଡ଼ୀ ପୂର୍ବ (ଜାପନା)
ତା ୧୭/୨/୮୮

# ଗ୍ରୀଷ୍ମ ଋତୁର କବିତା

## ।। ତାଳଗଛ ।।

ନିଦାବିଷ୍ଣୁ ପରି
ନିଦାଘ ବରଷା ଶୀତ ସହି
ନିର୍ବିକାରେ ଠିଆ
କଳା ତାଳଗଛଗୁଡ଼ା ।
ଅଥଚ, ଆକାଶ
ଚୁମ୍ବିବା ଆଶାରେ
ଉଦ୍‌ଗ୍ରୀବ ।
ତହିଁ କିବା ବିରାଜନ୍ତି
ଷୋଳ ସସ୍ର ଗୋପନାରୀ ?

## ।। କାଶତଣ୍ଡୀ ।।

ଏ ପୋଖରୀ ଧାରେ ଧାରେ
ପବନେ ଦୋଳନ୍ତି
କେତେ କାଶତଣ୍ଡୀ ।
କି ହସନ୍ତି କରକର
ମୋ ବିରହ ଦଶା ଦେଖି ?
ଅବା କି ଚାମର
ଚାଳଇ ପବନ
ମୋ ହୃଦୟ ଶାନ୍ତି ପାଇଁ ?

## ।। ସାପ ।।

କବିର କଳ୍ପନା ପରି
ଶିଖୀ ପୁଚ୍ଛ ଧରେ ଟେକି ।
ବାସ୍ତବତା ପନ୍ଥ କରି
ଏ ଗ୍ରୀଷ୍ମେ ଶୁଏ ସାପ
ତା ଛାଇରେ କରମ ଆଦରି ।
ସେ ବର୍ଣ୍ଣ ବିଭାରେ
ବିଭୋର ବା ଚକ୍ଷୁଶ୍ରବା
ଶୁଣି ସପ୍ତ ସ୍ୱରର ଲହରୀ

## ।। ନେଉଳ ।।

ନେଉଳ ଦେଖଇ ଫେରି ଫେରି
ଏ ତାତି ମାଟିରେ
ପାଦ ଅବା ଯାଉଥିବ ପୋଡ଼ି ।
ଦେହ ରଙ୍ଗ ମାଟିରେ ମିଶାଇ
ଚାଲେ ବୀର ଦେଶଭକ୍ତ ପରି ।
କାହାପାଇଁ ଶୁଭ ମନାସଇ ?
ସାପ ଦେଖି ଗର୍ଜିଉଠେ
ପାପ ଦେଖି ସାଧୁ ପରି ।

## ।। ସନ୍ଧ୍ୟା ।।

ସନ୍ଧ୍ୟା ଆସେ ବନ୍ଧ୍ୟା ନାରୀ ପରି
ପୃଥୁଳ ତା ଶରୀର ବିସ୍ତାରି

ମୃଦୁ ହସି ଆଖିରେ ତା
ସର୍ବଗ୍ରାସୀ ମାଦକତା ଭରି ।
ବିଲୁଆ ବୋବାଏ
ବିଲହୁଡ଼ା ଆର ପାରି ରହି ।
କି ସତର୍କ କରିଦିଏ
ସରଳ ତରଳ ମନ ମୋର
ତାରି ପଛେ ପଛେ
ନ ଗୋଡ଼ାଇବା ପାଇଁ । ■■

କାରାବାଡ଼ୀ ପୂର୍ବ (ଜାଫନା, ଶ୍ରୀଲଙ୍କା)
ତା ୨୩/୨/୮୮

# ଇନ୍ଦ୍ରଧନୁ

ଏତେ ଦିନ ପରେ
ତୁମଠାରୁ ଥାଇ ଏତେ ଦୂରେ
ମୋ କଷଟିପଥର-ହୃଦୟ
ପରଖୁଛି ତୁମ ପ୍ରେମ
ସହଜାତ ଯାନ୍ତ୍ରିକ ଜ୍ଞାନରେ
ସ୍କେଲ ପ୍ରୋଟ୍ରାକ୍ଟର ଓ ସେଟ୍‌ସ୍କୋଆର୍ ଧରି
ରସାୟନ ବିଜ୍ଞାନାଗାରର
ଏସିଡ୍ ଟେଷ୍ଟ ପରି ।

ତୁମ ଆଖିର ଉଲ୍ଲାସ
ମୋ ତୃଷାର୍ତ୍ତ ଓଠ ପିଇପାରିଲାନି ।
ତୁମ ଅଧରର ମଧୁରତା
ମୋ ପିଆସୀ ମନ ପାଇ ପାରିଲାନି ।
ତୁମ ଘନ କେଶର ରଜନୀ
ମୋର କର-ରବିକୁ ଦୁଷ୍ପ୍ରାପ୍ୟ ।
ତୁମ ଗଣ୍ଡ କୁସୁମ ବିକାଶ
ମୋ ତର୍କ ଅରଣ୍ୟେ ରହିଗଲା ଗୋପ୍ୟ ।
ତୁମର ସେ ଗେଲାଇ କହିବା କଥା ସବୁ
ମୋ ବାସ୍ତବ ନୁକ୍ତାଚିନି
ନ୍ୟାୟ ନିର୍ଦ୍ଧାରଣ ଆଗେ
ପାଣିରେ ଯା ଗାରକଟା ପରି ହେଲା ।
ତୁମ ପ୍ରେମ ଇନ୍ଦ୍ରଧନୁ
ମୋ ନିରାଶା ଆକାଶରେ ଲିଭି ଲିଭି ଗଲା । ■■

କାରାବାଡ଼ୀ ପୂର୍ବ (ଛାପନା)
ତା ୧୨/୪/୮୮

# ତରଙ୍ଗର ବ୍ୟବଧାନ

ସମୁଦ୍ର ଏପାରି ବସି
ସମୁଦ୍ର ସେପାରି ଥିବା
ସୁନା ଚଢ଼େଇର ପର ଗଣେ ।
ତରଙ୍ଗରେ ଭାସି ଆସେ
ତା ମଧୁ କାକଳୀ ।
ଏ ମଝିରେ ଲହରୀର ବ୍ୟବଧାନ
ମାପି ଚୁପି ଚାଲିବାର ଅଭ୍ୟାସରୁ
ମୁଇଁ ଆଉ ଆଗେଇ ପାରୁନି ।

ସେ ପଟର ନଈ ପାଣି
ପବନ ପରଶ
ଫୁଲ ପାଖୁଡ଼ାର ଖିଲି ଖିଲି ହସ
ତେଇଁ ରହି ଥିବା
ଦେଖେ ଏ ଉଆନେ
ମୁଁ ଏତେ ସପନ ।

ସେଠି ମୋର ସୁନାନାକୀ ଝିଅ
ପାପୁଲିରେ କୁସୁମ କୋମଳ
ମୁହଁକୁ ଘୋଡ଼ାଇ
କୋହ ତୋଳୁଥିବ
ଅନ୍ଧାର ବଖୁରାଟିରେ ।
ଅଗ୍ନା ଅଗ୍ନି ବନସ୍ତରେ
ଥିବା ମହମହ
ମହୁଲ ଫୁଲର ବାସ ।

ଏହିପରି ଆଉ କେତେଦିନ
ଚାଲିଥିବ ରୁଷାରୁଷି
ମାନ ଅଭିମାନ ।

ଏ ଦୀପଟି ଦପ୍ କରି ଲିଭିଯିବା ଆଗୁ
କୁହ କି ଗୋ ଖୋଲିବନି ମୁହଁ ?
ଏଥିକି କହିବା ଅବା
ତରଙ୍ଗର ବ୍ୟବଧାନ । ■■

କାରାବାଡ଼ୀ ପୂର୍ବ (ଜାଫନା, ଶ୍ରୀଲଙ୍କା)
ତା ୧୬/୪/୮୮

# ଚିରନ୍ତନ ରୀତି

ତୁମେ ଯେବେ ହସିଦିଅ
ଫୁଲ ଫୁଟେ ଦିଗ ବିଦିଗରେ ।
ତୁମର ବେପଥୁ
କିଶଳୟେ ଆଣେ ଶିହରଣ ।
ତୁମରି ଖୁସିରେ ହସିଉଠେ ଧରା ।
ତୁମ ଆଲିଙ୍ଗନେ
ଫୁଟଇ କଦମ୍ବ ।
ତୁମରି କେଶକୁ କରେ
ବଳାହକ ବାଦ ।

ତୁମେ ଯେବେ ରୁଷି ବସ ଋଷି ପରି
ଚଳମାନ ଏଇ ବିଶ୍ୱ
ସ୍ତମ୍ଭୀଭୂତ ହୋଇଯାଏ ।
ତୁମ ଆଖି ଲୋତକରେ
ମେଘକନ୍ୟା କାନ୍ଦେ ।
ତୁମ ବିଭାବରେ
ବସନ୍ତ ବିଳସେ ।
ତୁମ ନେତ୍ର ଜ୍ୟୋତି ନେଇ
ଉଷା ପରକାଶେ ।

ତୁମ ମୌନତାରେ ଏତେ ଭାଷା
ଜାଣିତ ନ ଥିଲି ।
ତୁମରି ବିଶ୍ୱାସ ଏତେ ଆଶା
କରି ତ ନ ଥିଲି ।
ସେ ରାତ୍ରୀର ତୃତୀୟ ପ୍ରହରେ
ପଲକ ପତନେ ପୁଲକ ଖେଳିଲା ।

ଅନ୍ଧକାର ମହକାଇ
ଅବା ଜ୍ୟୋତ୍ସ୍ନା-ଫୁଲଟି ଫୁଟିଲା ।

ତା ପରେ ନୟନ-ନୀରେ
ପାଦ୍ୟ ଅର୍ଘ୍ୟ ଦେଇ
ବସାଇଲ ସିଂହାସନେ
ପୂଜାର ସାମଗ୍ରୀ ଫେଇ ।
ଦୂର୍ବାକ୍ଷତ ନାରିକେଳ
ଧୂପ ଆଉ କର୍ପୂରର ବାସ
ମମତା ପ୍ରଦୀପ ଥୋଇ
ପାନ ପୂଗ ଦେଲ ମୁଖବାସ ପାଇଁ ।

ତା ପରେ କି ହେଲା ?
ଦେବତ୍ୱର ଦୀପ୍ତି ନେଇ
ମୁଁ ଅବତରିଲି ମାଟି କାଦୁଅକୁ ।
ବୀଜ ବୁଣି ଏଇଥିରେ
ସୃଜିବାକୁ ଶସ୍ୟର ସମ୍ଭାର ।
ଶ୍ୟାମଳିମା ଦେଖି ମୁଁ ଭୁଲିଲି
ପୂଜାର୍ଚ୍ଚନା ଭାଗବତ ପାଠ ।

ସେ ଶସ୍ୟରୁ ବୀଜ
ବୀଜୁ ପୁଣି ଶସ୍ୟ
ଏତ ଚିରନ୍ତନ ରୀତି । ■■

କାରାବାଡ଼ୀ ପୂର୍ବ (ଶ୍ରୀଲଙ୍କା)
ତା ୧୭/୪/୮୮

# ଦୁଇଟି କବିତା

## ।। ବର୍ଷା ।।

ବଇଶାଖୀ ବର୍ଷା ପରି
ଆସିଥିଲ ତୁମେ
କରକାର କର କର ହସ
ଚଉଦିଗେ ଚହଟାଇ
ନୟନ ମଲ୍ଲୀରେ
ଅନେକ ବାସନା ଥୋଇ
ବିଦ୍ୟୁତ ଜ୍ୱାଳାରେ
ମୋ ହୃଦୟ ମେଘକୁ ଥରାଇ ।

## ।। ପବନ ।।

ଏ ପବନେ ଏତେ ମାଦକତା
ଜଳକଣା ସ୍ନେହ
ଅଜଣା ଫୁଲର
ମମତା ମହକ
ବଣହାତୀ ପରି
ଝୁଲି ଝୁଲି ଚାଲେ ।
ସତେ ଅବା ମୋର ପ୍ରିୟା
ପବନ ପରଶେ
ଛୁଇଁ ଛୁଇଁ ଯାଏ । ■■

କାରାବାଡ଼ୀ ପୂର୍ବ (ଜାଫନା, ଶ୍ରୀଲଙ୍କା)
ତା ୧୮/୪/୮୮

---

''ଆମ ସହର ଆମ ଗାଁ'' ର ପ୍ରଥମ ବର୍ଷ ୩ୟ ସଂଖ୍ୟା ମେ ୯୫ରେ ପ୍ରକାଶିତ ।

# ସୁମନ ସୁଗନ୍ଧ

ସୁମନ ସୁଗନ୍ଧ ପରି
ତୁମ  ସ୍ମୃତି ଭାସିଆସେ ।
ମୋ ମନ କ୍ୟାନ୍‌ଭାସ୍‌ରେ
ଚମ୍ପାକଢ଼ି ଆଙ୍ଗୁଠିରେ
ଆଙ୍କିଦିଅ ଅନେକ ସୁଦୃଶ୍ୟ ।

ତୁମର ଭୂଗୋଳ ଅଧ୍ୟୟନ ପରେ
ସେମାନେ ଚାହିଁଲେ
ପଢ଼ିବାକୁ ତୁମ ଇତିହାସ ।
ଆଦି ମାନବର ବାସନାରେ
ଓତପ୍ରୋତ ସେଗୁଡ଼ାକ
ତୁମର ଗୁହା ଗହ୍ବରୁ
ନୃତତ୍ତ୍ୱବିତ୍ ପରି
ଟାଣି ଆଣୁଥିଲେ
ପୁରାତନ ପ୍ରସ୍ତର ଯୁଗର
ନରକଙ୍କାଳର ଫସିଲ୍ ।
କିନ୍ତୁ କିଏ ପଢ଼ି କି ପାରିଲା
ଶୁଭ୍ର ଶେଫାଳୀର
ଭୁରୁଭୁରୁ ଗନ୍ଧ ପରି
ତୁମର ସେ ମନସ୍ତତ୍ତ୍ୱ;
ଉଷାକାଳେ ଅରୁଣ ଉଦୟ
ପରି ତୁମ ଅନ୍ତରର କଥା ?

ହାତେ ଲେଖି ଚନ୍ଦ୍ର ତାରା
କହୁଥିଲ ଅବା
ରାତ୍ରୀ କେତେ କମନୀୟ !

ସୁଶୀତଳ ଶୁଭ୍ର ଜ୍ୟୋତ୍ସ୍ନା
ଛାଇଯାଏ ଦିଗ୍ ବିଦିଗରେ
ପୃଥିବୀର ପାପ ତାପ
ପ୍ରଶମିତ [illegible];
ଏ ଧରାର ଧୂଳି ପରେ
ଛାଇଦେଇ ସ୍ନେହର ଗାଲିଚା ।
କିନ୍ତୁ ସେମାନେ ଭାବିଲେ
ଏ ତୁମ ଆହ୍ୱାନ
ମେଦ ମାଂସ ନରକର
ଉପଭୋଗ ପାଇଁ ।

ତା'ପରେ କଣ ହେଲା ?
ହାତୀ ସବୁ ଚାଲିଗଲେ
ଦଳି କୁଦି ସୁନାର ଫସଲ;
ଆଉ ସେ ଶେଫାଳୀ
ବୃନ୍ତଚ୍ୟୁତ ହେଲା
ଅଦିନ ପବନେ । ■■

କାରାବାଡ଼ୀ ପୂର୍ବ (ଢାପନା)
ତା ୧୯/୪/୮୮

# କନକ ସେନ୍ତୁରାଇ

ଜଳ ସ୍ଥଳ ବିଭାଜନ ପାଇଁ
ସେତୁବନ୍ଧ ଏଥି ଲୋଡ଼ା କାହିଁ ।
ସମୁଦ୍ର ଭିତରେ କାହିଁ
ସ୍ଥଳ ଲମ୍ବିଅଛି ଜେଟୀ ନାମ ବହି ।
ଜଳ କାହିଁ ଆସିଛି ଉଛୁଳି
ଯୌବନ ଉନ୍ମାଦେ ଅବା ଆନମନା ବାଳୀ ।
ଜାହାଜ ଆସିବ ବୋଲି
ଶୋଇଛି ସେ ଗୋଡ଼ ଘାଲି ।
ଜଘନ ଦେଇଛି ମେଲି ।
ଦଶ ପାଞ୍ଚ ହୋଇ ମେଳି
କରିବେ ସେ ଯଦି ଅତ୍ୟାଚାର
ଈର୍ଷ୍ୟାଦ୍ୱେଷୀ କଳି କରି ପରସ୍ପର ।
ଯିବେ ସିନା ଶମନର ପୁର
କି ହେବ ପୋତାଶ୍ରୟର ?

କପୋତ ପୋତ ବସାରେ
ଚାହିଁରହେ ଖାଦ୍ୟ ପାଇବା ଆଶାରେ ।
ଗଜୁରୁଛି ଡେଣା ତାର
ଉଡ଼ିବା ଶିଖିଲେ କରିଦେବ ପିତା ମାତା ପର ।
ବିଦେଶ ବଣିଜ ପାଇଁ ଯିବ ଜାହାଜରେ
କିଣା ବିକା କରିବ ସେ ଜିନିଷ ହଜାରେ ।
କି ଯଶ ପାଇବ ତହୁଁ ?
ସଞ୍ଚି ରଖିଥିବା ମଧୁ
ଅନ୍ୟମାନେ ଖାଇ ବୋଲାଇବେ ସାଧୁ । ■■

କନକ ସେନ୍ତୁରାଇ (ଜାଫନା)
ତା ୨/୫/୮୮

---

(କନକ ସେନ୍ତୁରାଇ ଜାଫନା ଅନ୍ତର୍ଗତ ପ୍ରସିଦ୍ଧ ବନ୍ଦର ।)

# ପଏଣ୍ଟ ପେଡ୍ରୋରେ ବର୍ଷା

ସମୁଦ୍ରର ଉପକୂଳ
ଲମ୍ବିଅଛି ଅଜଗର ପରି
ଏ ଉତ୍ତର ଦିଗେ ପୂର୍ବରୁ ପଶ୍ଚିମ ।
ଅର୍ଦ୍ଧମଗ୍ନ ଅର୍ଦ୍ଧଭଗ୍ନ
କେତେ ଏଠି ପ୍ରବାଳ ପ୍ରାଚୀର ।
ଧୀର ପାଣି ହିଁ ପଥର କାଟେ ।

ଗଭୀର ସମୁଦ୍ର ଜଳେ
ଅଗଭୀର କାଠ ଡଙ୍ଗାଟିଏ ।
କେଉଟ ଧରଇ ମାଛ ଜାଲକୁ ବିଛାଇ ।
ତୃଷା ତା ତୁଟାଏ
ତଟବର୍ତ୍ତୀ ନଡ଼ିଆ ଗଛକୁ ଦେଖି ।

ଏ ସ୍ତବ୍ଧ ସୁଷମା ଧ୍ୱସ୍ତ କରି
ସମୁଦ୍ରର ବୁକୁ ଚିରି
ଛୁଟେ ଏଠି ପାବାର ଲଞ୍ଚ
ଅହରହ ଦିବାରାତି ।

ଆଧୁନିକ ପ୍ରଗତିରେ
ନଷ୍ଟପ୍ରାୟ ପର୍ଯ୍ୟାବରଣର ପରି
ବାଲିରେ ଶଂଖ ଶାମୁକା କଉଡ଼ି ପ୍ରବାଳ
କହିଯାଏ ସମୁଦ୍ରର ଯେତେକ ତାଡ଼ନା
ଆଉ ଗର୍ଜନ ତର୍ଜନ ।

ଆକାଶରୁ କି ଫୁଲ ବର୍ଷିଲା !
ମେଦିନୀର ମେଘପୁଷ୍ପ ଶୋଭା ।

ଏ ନିଦାଘେ ଏ ଅତି ବାଞ୍ଛିତ ।
ଲୁଣୀ ପାଣି ପିଇ ପିଇ ଖାରା ତାର ଜିଭ,
ତଥାପି ତୃଷାର୍ତ୍ତ ଏ ସମୁଦ୍ରର ବାଲି,
ସତେ ଏତେ ପିଇଗଲା ବରଷାର ଜଳ ।

ଧୂଳିରେ ଧୂସର ଅଜଗର ବୃତ୍ତିଧାରୀ
ପାଦପର ପତ୍ରସବୁ
ନୂଆ ଓଜ ତେଜ ଧରି
କିଅବା କରିବେ ଘର ଗୃହସ୍ଥାଶ୍ରମରେ ?

କେତେ କୁନି କୁନି ପାଦଚିହ୍ନ
ସବୁ ଲିଭିଗଲା !
କେତେ ମିଛ ମିଛ ଘଇତା-ମାଇପୀ ଖେଳ
ବାଲିଘର ସବୁ ଭାଙ୍ଗିଗଲା । ▪▪

ଦେବଥାଙ୍ଗ (ଭୁଟାନ)
(କାର୍ତ୍ତିକ ପୂର୍ଣ୍ଣିମା)
ତା ୨୩/୧୧/୮୮

---

(ମୋ'ର ଶ୍ରୀଲଙ୍କାରୁ ଭୂଟାନ ବଦଳି ହେଲା । ପଏଣ୍ଟ ପେଡ୍ରୋର ବର୍ଷା ସମୟରେ ଯେଉଁ ଭାବ ଉଦ୍ରେକ ହୋଇଥିଲା ତାହା ମୁଁ ଭୂଟାନରେ କବିତାରେ ଲିପିବଦ୍ଧ କଲି ।

# ଟିପ୍ପଣୀ

## ଜାଫନା

ନଗହୀନ = ପର୍ବତହୀନ
ନଗପୂର୍ଣ୍ଣ = ବୃକ୍ଷଭରା
ନଗର = ପର୍ବତ ଓ ବୃକ୍ଷ

କୁରେ = ପୃଥିବୀରେ
ବୈଶ୍ରବଣ = କୁବେର
ଉତ୍ତୁଙ୍ଗ = ଉଚ୍ଚ

ସିନ୍ଦୂରବଦନ = ଗଜବଦନ, ଗଣେଶ
ସିନ୍ଧୁସୁତା = ମହାଲକ୍ଷ୍ମୀ
ଶମ୍ଭୁସୁତ = କାର୍ତ୍ତିକେୟ
ପମାଦରେ = ପରମ ଆଦରେ, ଅନ୍ୟ ଅର୍ଥ ପ୍ରମାଦରେ ଅର୍ଥାତ୍ ବିପଦରେ
ପଲେଲୀ, ବାସାଭିଲ୍ଲନ୍, ପୁନ୍ନାଲା କାଡୁଭାନ୍, ଭରେଲୁ, ଉରୁମ୍ପିରାଇ, ଉତ୍ତର କୋପାଇ ଓ ଦକ୍ଷିଣ କୋପାଇ ଏସବୁ ଜାଫନା ଅନ୍ତରୀପର ସହରବିଶେଷ । ପରସ୍ପରର ଦୂରତା ପ୍ରାୟ ୪/୫ କିଲୋ ମିଟର ।

## ରେ ବୀର ବାଳକ

ସେ ଶତ୍ରୁ ହେଉ ବା ମିତ୍ର ହେଉ, ନ୍ୟାୟୋଚିତ ହେଉ ବା ଅନ୍ୟାୟ ହେଉ, ସାହସ ଓ ବୀରତା ସର୍ବଦା ସମ୍ମାନନୀୟ । ତେଣୁ ପରା କହନ୍ତି—ଯେ ସମ୍ମୁଖ ସମରରେ ବୀରଗତି ପ୍ରାପ୍ତ ହୁଏ ତାକୁ ଇନ୍ଦ୍ର ଆଦରରେ ପାଛୋଟି ନେଇ ଅର୍ଦ୍ଧାସନ ଦେଇ ପାଖରେ ବସାନ୍ତି । ସେପରି ଏକ ୧୪/୧୫ ବର୍ଷର ଏଲ.ଟି.ଟି.ଇ ବାଳକର ଅଭୂତପୂର୍ବ ବୀରତ୍ୱ ଏ କବିତାଟିରେ ପ୍ରତିଫଳିତ ।
ଦୁଷ୍ମନ୍ = ଶତ୍ରୁ
ଅପାଂପତି = ସମୁଦ୍ର

## ତାଳବନ

ଅନ୍ତରୀପଟି ତାଳ ନାରିକେଳ ଓ କଦଳୀ ବୃକ୍ଷରେ ପୂର୍ଣ୍ଣ ।
ତାଳବନାପାଳ—ତାଳବନକୁ ଯେ ଅପାଳ (ପାଳକହୀନ) କରିଥିଲେ ସେ ବଳରାମ ।

ସିତ ଗାତ୍ର = ଶ୍ୱେତ ଶରୀର
ଅଭ୍ରଂକଷ = ନଭଶ୍ଚୁମ୍ବୀ

## ସମୁଦ୍ର

କଥିତ ଅଛି ଶ୍ରୀରାମ ସସୈନ୍ୟ ସେତୁ ବାନ୍ଧି ସାଗର ଲଂଘିବା ଖବର ପାଇ: ରାବଣ ବିବ୍ରତ ଓ ଆଶ୍ଚର୍ଯ୍ୟ ହୋଇ ଏକାବେଳେ ସାଗରର ପର୍ଯ୍ୟାୟବାଚୀ ଦଶନାମ ଦଶଟି ମୁହଁରୁ ବ୍ୟକ୍ତ କରିଥିଲା । ଏହା ତା ପ୍ରତି ଏକ ଅଶୁଭ ସୂଚନା ଥିଲା । ମୃତ୍ୟୁର ପୂର୍ବ ଆଭାସ ।

ଦଶାସ୍ୟ = ଦଶାନନ, ରାବଣ
ରାମବାମା = ସୀତା, ସୁନ୍ଦରୀ ସ୍ତ୍ରୀ
ପର୍ଣ୍ଣଶାଳୁ = ପତ୍ର କୁଡ଼ିଆରୁ, ଛଣଛପର ଘରୁ
ନିର୍ଜର ନାରୀ = ଦେବତାଙ୍କ ସ୍ତ୍ରୀ, ବାର୍ଦ୍ଧକ୍ୟହୀନା ସ୍ତ୍ରୀ
ଜରଠ = ବୃଦ୍ଧ ଅନନ୍ତ = ଅସୀମ
ବ୍ୟାଜ = ଛଳ

ଗୋପନରେ ଗୁରୁପତ୍ନୀଗାମୀ ଶଶୀ (ଚନ୍ଦ୍ର) ପ୍ରତ୍ୟହ କ୍ଷୟ ବୃଦ୍ଧିର ଦୁଃଖ ପାଆନ୍ତି । ଶଚୀପତି (ଇନ୍ଦ୍ର) ଗୋପନରେ ଗୌତମ ସ୍ତ୍ରୀ ଅହଲ୍ୟାଙ୍କୁ ସମ୍ଭୋଗ କରିଥିବାରୁ ଶରୀରରେ ସହସ୍ରଯୋନି, କାଳକ୍ରମେ ତାହା ସହସ୍ର ନେତ୍ର ହେଲା ।

ବାତ = ପବନ ଶୁକ୍ତି = ଶାମୁକା
ସୂକ୍ତି = ଉତ୍ତମ ବଚନ, ଯଥା ପୁରୁଷ ସୂକ୍ତ ଉତ୍ତାନ = ପଡ଼ିଆ
କୁମ୍ଭଜ = ଅଗସ୍ତ୍ୟ ଋଷି, କଥିତ ଅଛି ସେ ଚଳୁରେ ସମୁଦ୍ରକୁ ପିଇଥିଲେ ।
କୌଣପ = ରାକ୍ଷସ, କଥିତ ଅଛି ଦିନରେ ରାକ୍ଷସମାନେ ସମୁଦ୍ରରେ ଲୁଚିଯାଉଥିଲେ ଓ ରାତିରେ ନିଶାଚର ହେତୁ ବଳ ବଢୁଥିଲା ଓ ଦେବତାଙ୍କୁ ଆକ୍ରମଣ କରୁଥିଲେ ।
ବଡ଼ବାଗ୍ନି = ଜଳ ସଂଘର୍ଷରେ ଯେଉଁ ଅଗ୍ନି ସୃଷ୍ଟି ହୁଏ ।

## ଗୋ ବାଡ଼ାମାରୀଚି

ବାଡ଼ାମାରୀଚି ଜାଫନା ଅନ୍ତରୀପର ସ୍ଥାନବିଶେଷ । ମନରେ ଧାରଣା ହୁଏ "ସୁବାହୁ ସୁବାହୁ ତଳେ ମାରି ମାରୀଚକୁ । ଆକାଶରେ ଶରେ ଉଡ଼ାଇଲେ ସେ ଯଶକୁ ।" —ଲାବଣ୍ୟବତୀ । ମାରୀଚ ରାକ୍ଷସକୁ ଶରରେ ଉଡ଼ାଇ ମଖରକ୍ଷକ ବାଳକ ରାମ ଆଉ ଏ ସ୍ଥାନରେ ତାକୁ ପକାଇ ନ ଥିଲେ ତ ? ଅଥବା ଏ ଘଟଣା

ପରେ ମାରୀଚ ଏଠାରେ ରହି ରାଜ୍ୟ, ରମଣୀ, ରତନ ଆଦିର ଯୁକ୍ତ ଶବ୍ଦଗୁଡ଼ିକୁ ଭୟ କରି (ଶ୍ରୀରାମ ର'ଯୁକ୍ତ ଶବ୍ଦ ହେତୁ) ରାବଣ ଆସି ମାୟାମୃଗ ସାଜିବାକୁ ଅନୁରୋଧ ଓ ପରେ ଆଦେଶ ଦେବାଯାଏ ଏଠାରେ ଆଉ ଥାଇ ତପ ସାଧୁଥିଲା କି ?

ଶଫରୀ = କେରାଣ୍ଡି ମାଛ
ବୀଚି = ଲହରୀ
ଘନରସ = ଜଳ, ପ୍ରେମ
ଘନ = ଘଞ୍ଚ, ପୃଥୁଳ
ପବମାନ = ପବନ
କରଜ = ନଖ

## ଏ କି ବିଡ଼ମ୍ବନା

ନିଜ ଘର ନ ସଜାଡ଼ି ଆମେ ଅନ୍ୟର ହାନି ଲାଭରେ ହାତ ଦେଉଛେ । ପୁଣି ବିଛା ମନ୍ତ୍ର ନ ଜାଣି ଆମେ ସାପ ବିଳରେ ହାତ ପୂରାଉଛେ । ସେପରି ଶ୍ରୀଲଙ୍କାର ରାଷ୍ଟ୍ରପତି ଜୟବର୍ଦ୍ଧନ 'କଣ୍ଟକେ ନୈବ କଣ୍ଟକମ୍' ନୀତିରେ ଏଲ.ଟି.ଟି.ଇକୁ ନିୟନ୍ତ୍ରଣାଧୀନ କର ବୋଲି ଭାରତକୁ ଅନୁରୋଧ କରିଥିଲେ କି ?

## ଶ୍ରୀଲଙ୍କାରେ ଶୀତରାତିରେ ବର୍ଷା

ମେଘ ଛାଇଗଲେ ଗ୍ରହ ଓ ତାରାମାନେ ଲୁଚି ଯାନ୍ତି । ମନେ ହୁଏ ମେଘ ଯେପରି ଆକାଶର ଗନ୍ତାଘରୁ ହୀରା (ଶୁକ୍ର), ନୀଳା (ଶନି) ମଣି (ଚନ୍ଦ୍ରମା), ମୁକ୍ତା (ତାରକା), ପ୍ରବାଳ (ମଙ୍ଗଳ) ବୈଦୂର୍ଯ୍ୟ (ତାରକା) ଚୋରି କରିଛି ।

ଝୋଂକା = ପବନ ପ୍ରବାହ

ସଂସାରରେ ଚଳିବା ଲଟା, ବୁଦା, କଣ୍ଟକପୂର୍ଣ୍ଣ ରାସ୍ତାରେ ଚାଲିବା ପରି । ଶୀତଦିନେ ଶ୍ରୀଲଙ୍କାରେ ବେଳେ ବେଳେ ବର୍ଷା ହୁଏ ।

## ବୁଢ଼ୀ ମାଆ

କାର୍ତ୍ତିକ ମାସରେ ବିଶେଷତଃ ଗୋବରରେ ଚଉରା ଲିପି ପଞ୍ଚବର୍ଣ୍ଣୀ ମୁରୁଜରେ ଚଉରା ମୂଳେ ଝୋଟି ଦିଅନ୍ତି ଓ ମାଆମାନେ କୁଟୁମ୍ବର ଶୁଭ ମନାସନ୍ତି । ବିପଦ-ସଂକୁଳ ଶ୍ରୀଲଙ୍କାରେ ସୈନ୍ୟ ବାହିନୀରେ ପୁଅ ଥିବାରୁ ମୋ ମା ଏହାର ବା କିପରି ବ୍ୟତିକ୍ରମ କରିଥିବ ? କିନ୍ତୁ ସେ ବାପାକୁ ଧୈର୍ଯ୍ୟ ଦେଉଥାଏ, ମୋ ହୃଦୟ କହୁଛି · ମୋ ପିଲା ନିରାପଦରେ ଅଛି ।

## କାହିଁ ସେହି

କବି ସିଂହାବଲୋକନ କରୁଛନ୍ତି; ତାଙ୍କର ସେ କୁସୁମିତ ପଲ୍ଲବିତ ଦିନଗୁଡ଼ିକ କୁଆଡ଼େ ଗଲା ? ଏତେ ଗୁଳି ଗୁନାଭ ଗର୍ଜନ । ପୁଣି ଯେଉଁ ଉଦୀୟମାନ ସାହସୀ ଏଲ୍.ଟି.ଟି.ଇ.  ଯୁବକମାନେ ଇହଲୀଳା ସମ୍ବରଣ କଲେ ତାଙ୍କ ମା'ର ହୃଦୟ ଯେ କ'ଣ ହେଉ ନ ଥିବ ? ଏଠାରେ ବୃକ୍ଷକୁ ଆଧାର କରି କିଶଳୟ ଓ କଳିକା ପାଇଁ (ଉଦ୍‌ଭ୍ରାନ୍ତ ଏଲ୍.ଟି.ଟି.ଇ. ଯୁବକ ଓ ଯୁବତୀ) କବି ଦୁଃଖ ପ୍ରକାଶ କରିଛନ୍ତି ।

## ଯୁଦ୍ଧ

ମାଇନ୍ =  ଭୂମି ତଳେ ପୋତାଯିବା ବାରୁଦ ଯନ୍ତ୍ର ପାଦ ପଡ଼ିଲେ ବା ଗାଡ଼ି ଚକର ଚାପ ପଡ଼ିଲେ ଫୁଟି ଦୁର୍ଘଟଣା  ଘଟାଏ । ଗ୍ରେନେଡ୍  =  ସୈନିକମାନେ ଏକ ସୁରକ୍ଷା ପିନ୍ ବାହାର କରି ଶତ୍ରୁ ଉପରକୁ ଫିଙ୍ଗନ୍ତି । ଏହା ଫୁଟି ସୈନ୍ୟମାନଙ୍କୁ ମାରେ ବା ଆଘାତ କରେ । ମାଇନ୍‌ରେ ଏତେ ବାରୁଦ ଥିଲା ଯେ ତାର ଉର୍ଦ୍ଧ୍ୱ ଚାପରେ ସମଗ୍ର ଟ୍ୟାଙ୍କ୍ (ଯୁଦ୍ଧରଥ) କୋଡ଼ିଏ ଫୁଟ ଉଚ୍ଚକୁ ଉଠିଯାଇଥିଲା । ଶିବା = ବିଲୁଆ, କଥିତ ଅଛି ବାମ ଦିଗରେ ବିଲୁଆ ଦେଖିଲେ ଶୁଭ । ''ବାମେ ଶବ ଶିବା କୁମ୍ଭାଃ  ଦକ୍ଷିଣେ ଗୋ ମୃଗ ଦ୍ୱିଜାଃ, ନକୁଳଃ ସର୍ବ କାର୍ଯ୍ୟାଣି ଅହି ସର୍ବତ୍ର ବାଧ୍ୟତେ ।''

ତାଳ ଓ ନାରିକେଳର ଅନେକ ପତ୍ରରୁ ଜଳ ଝରେ । ଶତପତ୍ର  = ପଦ୍ମ । ଲୋକମାନେ ତାଳ ଓ ନାରିକେଳ ସହ ତୁଳନୀୟ, ସେମାନଙ୍କ ପଦ୍ମନେତ୍ରରୁ ଲୋତକ ଝରେ ।

'ରମ୍ଭା'ର ବିଲୋମ 'ଭାରଂ' । ତେଣୁ କଦଳୀ ଗଛ, ରମ୍ଭାର ବିପରୀତ ନାମ ସାର୍ଥକ କଲା । ଯେଣୁ ଫଳ ଖାଇବାକୁ ଲୋକ ନାହାନ୍ତି, ଏ ଗଛଗୁଡ଼ିକର ଜୀବନ ବ୍ୟର୍ଥ, ପୃଥିବୀର ଭାର କେବଳ ।

ହେଲ୍‌ମେଟ୍ = ଗୁଳି ବା ଲୁହା ଖଣ୍ଡ (splinter) ନ ବାଜିବା ପାଇଁ ଲୌହ ଶିରସ୍ତ୍ରାଣ

କେମୋଫ୍ଲେଜ୍ ନେଟ୍  = ହେଲମେଟ୍ ଚିକ୍କଣ ହେତୁ ଦୂରରୁ ଶତ୍ରୁ ଠଉରେଇ  ପାରେ, ତେଣୁ ତା ଉପରେ ଏକ ଜାଲି ବାନ୍ଧି ସେଥିରେ ଅଖା ଖଣ୍ଡ ବା ଘାସ ପତ୍ର ବନ୍ଧାଯାଏ ।

## ସନ୍ଧ୍ୟାର ଅନ୍ଧାରେ

ବାରୁଣୀ = ପଶ୍ଚିମାକାଶ

ବଳାକାବଳୀ = ବଗଗୁଡ଼ିକ

ଏକ ଅଦ୍ଭୁତ ସ୍ୱପ୍ନ ଦେଖି ଏ କବିତାଟି ଲେଖିଛି । ଚନ୍ଦ୍ରପକ୍ଷ ରାତିରେ ଏକ ସ୍ୱଚ୍ଛ ସରୋବରରେ ପଦ୍ମଗୁଡ଼ିଏ ଫୁଟିଛି । ହଠାତ୍ ପୂର୍ବ ପରିଚିତା ଏକ ସୁନ୍ଦରୀଙ୍କ ଆବିର୍ଭାବ ହେଲା । ମୁଁ ଭୁଜରେ ଭିଡ଼ି ଧରିଛି, ଭୁଜଙ୍ଗ (ବାସୁକୀ) ମନ୍ଦର ପର୍ବତ ସମୁଦ୍ର ମନ୍ଥନ କାଳେ ଭିଡ଼ି ଧରିବା ପରି ।

ଲୋଳ = ଚଞ୍ଚଳ

ନ୍ୟଗ୍ରୋଧ = ବଟ ବୃକ୍ଷ

## ହେଲିକପ୍ଟରରୁ ଜାପାନ

ଶାଦ୍ୱଳ = ବହୁ ବର୍ଣ୍ଣ ମିଶ୍ରିତ, ଅତନୁ = କନ୍ଦର୍ପ

ବାରେ = ଥରେ, ବାରାଂନିଧି = ଜଳନିଧି, ସମୁଦ୍ର

ଭୂଭୃତ = ପର୍ବତ, ରାଜା (ଶାସକ), ବନ୍ଧୁରତା = ଢିପ ଖାଲ, ବନ୍ଧୁରେ ରତ (ସ୍ନେହୀ)

ମହୀରୁହାବଳୀ = ବୃକ୍ଷସମୂହ ସିତ = ଧଳା

ଦୀର୍ଘ କବିତାଟି ସମାପ୍ତ କଲାବେଳେ ପ୍ରବାସୀ କବିମନ ଆଲୋଡ଼ିତ ହୋଇଛି । ସେଥିର ସାନ୍ତ୍ୱନା ସେ ପାଇଛନ୍ତି ଅହି (ସାପ, ଶେଷନାଗ) ତଳପ (ଶଯ୍ୟା) ଶାୟୀ ବିଷ୍ଣୁ ସ୍ମରଣରେ ।

## କାରାବାଡ଼ୀ

ଅବନୀ ବନୀ = ପୃଥିବୀର ବଗିଚା, ମଲାଙ୍ଗ = ଅର୍କିଡ୍ (orchid)

ପୁଷ୍ପବାସ = ଫୁଲର ବାସ୍ନା, ପୁଷ୍ପାବାସ = ଫୁଲ ବିଶିଷ୍ଟ

ହିରୀ (ହ୍ରୀ) = ଲଜ୍ଜା, ଦର = ଭୟ

ବର୍ମ = ସାଞ୍ଜୁ , ପିଧାନ = ଘୋଡ଼ଣୀ

ଶାଟୀ = ଶାଢ଼ୀ, ରଜତ ଫଳକ = ରୂପା ଢାଲ

ପୃଥିବୀରୁ ଚନ୍ଦ୍ରପରି ଉପଗ୍ରହ ଜାତ ।

ସନ୍ତକ = ଚିହ୍ନ, ଅପରାଜିତା = ପରାସ୍ତ ନ ହୋଇ, ପୁଷ୍ପଲତା ବିଶେଷ
ଲୋକେ ଲୋକେ = ସଂସାରର ଲୋକେ, ଆତପତ୍ର = ଛତା
ବିକଳ ବିହଗଟି କବିପ୍ରାଣ, ପ୍ରିୟତମା ପାଇଁ ଆକୁଳ ହେଉଛି ।

## ଦୁଲିପ୍ ଫୁଲଟି ହାୟ

ତୁଲିପ୍ ନାମଧେୟ ଏକ ସୁନ୍ଦର ଫୁଲ, ତାମିଲ ଭାଷାରେ ଦୁଲିପ୍ ବୋଲି କଥିତ, କାରଣ ତାମିଲରେ ପ୍ରତ୍ୟେକ ବର୍ଗର ପ୍ରଥମ ତିନୋଟି ବର୍ଣ୍ଣ ପାଇଁ କେବଳ ଏକ ବର୍ଣ୍ଣ (ଅକ୍ଷର) ଅଛି ।

ପ୍ରଭଞ୍ଜନ = ବାୟୁ, ସଦ୍ମ = ଘର
ବୁବୀ ଟ୍ରେପ୍ = ବାରୁଦବିଶିଷ୍ଟ ଯନ୍ତ୍ର, ଯାହା ଚାପ ପଡ଼ିଲେ ଟଣା ହେଲେ, ବା ଟଣା ସୂତା ବା wire ହୁଗୁଳା ହେଲେ ସଂଚାଳିତ ହୋଇ ମାରଣାସ୍ତ୍ର ହୁଏ ।
ଦୁଲିପ୍ ସିଂ ଙ୍କର ମା ତାମିଲ ଓ ବାପା ଶିଖ୍ ॥
ଆଜି = ଯୁଦ୍ଧ, ସୁରାୟନ = (ସୁର+ ଅୟନ) ଆକାଶ
ଶରୀରର ପଞ୍ଚଭୂତ, ପଞ୍ଚମହାଭୂତରେ (କ୍ଷିତ୍ୟପ୍ ତେଜୋମରୁଦ୍ବ୍ୟୋମଃ) ମିଶିଗଲା, ତେଣୁ ମୃତ୍ୟୁକୁ ''ପଞ୍ଚତ୍ୱଂ ଗତଃ'' କୁହାଯାଏ ।

## ଉଷା

ଅଧଃ = ତଳେ, ବୈଜୟନ୍ତୀ = ବିଜୟ ପତାକା
ଆଶା = ଆଶା, ଦିଗ, ବିବିସ୍ମିତ = ବିଶେଷଭାବେ ବିସ୍ମିତ
ରୁଚିର = ସୁନ୍ଦର, ମୁଖରା = ବାଗ୍ମୀ, ବାତୁଳା
ତମ = ଅନ୍ଧାର, ରାହୁ, ରୂପଜୀବୀ = ବେଶ୍ୟା
ବିଷ୍ଣୁ ସର୍ବତ୍ର ବ୍ୟାପ୍ତ ଥିବାରୁ ସେ ସେ ନାମଧାରୀ ।
ଟର୍ଣ୍ଣେଡୋ = ଘୂର୍ଣ୍ଣିବାତ୍ୟା

## କବିତା

ନାଭିଜ = ନାଭିରୁ ଜାତ, ଶ୍ଳେଷ = ଅନେକାର୍ଥବୋଧକ ପଂକ୍ତି, ଯଥା ''ବାବୁ ନାକ ଶିରୀଦାନ ଯୋଗ୍ୟ ଯୋଷାକୁ, ବିହର କାନନ କରି ଆଲିଙ୍ଗନକୁ ।'' ବୈ.ବି

ବକ୍ର ବାଣୀ = ବଙ୍କେଇ କହିବା
ଏକାକ୍ଷର = ପଂକ୍ତିଟିରେ ଏକ ଅକ୍ଷର ହିଁ ଥିବ (ଅଳଙ୍କାର)
ସିଂହାବଲୋକନ = ସିଂହ ଯେପରି ପଛକୁ ବୁଲି ଦେଖେ ।
ବିରୋଧାଭାଷ (ଅଳଙ୍କାର)
ଚ୍ୟୁତାକ୍ଷର (ଅଳଙ୍କାର)
ବିଲୋମାନୁଲୋମ (ଅଳଙ୍କାର) = ମେଷ ଯୁଦ୍ଧ
ଚିତ୍ରବନ୍ଧ = ଗୋଟିଏ ଚିତ୍ରରେ ଅକ୍ଷର ସବୁ ଲେଖି କବିତା ଲେଖିବା (ଅଳଙ୍କାର)
'ଚିତ୍ରବନ୍ଧ କାବ୍ୟୋଦୟ' ଉପେନ୍ଦ୍ରଭଞ୍ଜଙ୍କ ବୈଦେହୀଶ ବିଳାସରେ ଚକ୍ର ବନ୍ଧରେ ସୁଗ୍ରୀବ ବିଷ୍ଣୁ ବୋଲି ପରିଚୟ ପାଇ ଶ୍ରୀରାମଙ୍କୁ ସ୍ତୁତି କରିବା ''ବିଭୁ ଖରପର ମେଳ ସାଧବୀ ।... ବିହତ ଦଶରୂପ ରଖ ଭୁବି''।

ଯମକ = ଏକ ଶବ୍ଦ ଦୁଇ ବା ଅଧିକ ବାର ସଙ୍ଗେ ସଙ୍ଗେ ଲେଖିବା (ଅଳଙ୍କାର)
''ବିରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ । ରାଜୀବ ରାଜୀବ- ନୟନା ତହିଁ ଖେଳା କରଇ ।'' (ଲାବଣ୍ୟବତୀ)
ରୂପକ (ଭାବାଳଂକାର) = ଚନ୍ଦ୍ରରୂପକ ମୁଖ, ଚନ୍ଦ୍ରମୁଖ
ଚୌପଦୀ = ଚାରି ଧାଡ଼ିର ଲେଖା ଶ୍ରୀରାମ ଚରିତ ମାନସ (ତୁଳସୀଦାସ କୃତ)
ସୋରଠା = ଦୁଇଧାଡ଼ି (ଶ୍ରୀରାମ ଚରିତ ମାନସର ସ୍ଥାନେ ସ୍ଥାନେ)
ବନ୍ଦୌ ପବନ କୁମାର ଖଲବନ ପାବକ ଜ୍ଞାନଘନ
ଜାସୁ ହୃଦୟ ଅଗାର ବସହିଁ ରାମ ଶର ଚାପଧର ।
ତରଳ = ଚଞ୍ଚଳ, ବାସ = ଲୁଗା ବକ୍ତ୍ର = ମୁଖ
ବିଭା = ଆଭା, ପ୍ରଭା, ହ୍ରୀ = ଲଜ୍ଜା ଦର = ଭୟ
ଶେଷୋକ୍ତ ୧୨ଟି ପଂକ୍ତିରେ ଆଧୁନିକ କବିତାକୁ ଏକ ଆଧୁନିକା ସ୍ତ୍ରୀ ସହିତ ତୁଳନା କରାଯାଇଛି ।

## ସନ୍ଧ୍ୟା

ବଡ଼ବା = ସମୁଦ୍ରରେ ଉତ୍ପନ୍ନ ଅଗ୍ନି, ପ୍ରତୀଚୀ = ପଶ୍ଚିମ
ପାଥୋଧି = ଜଳଧି, ସମୁଦ୍ର । ବକ୍ରବାକ = ବକ୍ରବାଣୀ ପ୍ରେମଭରା ବଙ୍କା ବଚନ
ପୁରାଣ କଥିତ ଯମୁନା ସହୋଦରୀ ହେତୁ ତାର ଅବୈଧ ପ୍ରଣୟିଭିକ୍ଷା ଯମ ନାସ୍ତି କରିଥିଲେ ।
କ୍ଷଣପ୍ରଭା = ବିଜୁଳି, ବୀଚି = ଲହରୀ, ବୀଥି = ସମୂହ

## କଳ୍ପନା

ଅହଲ୍ୟା ହରଣରୁ ଅଭିଶପ୍ତ ଇନ୍ଦ୍ର ସହସ୍ର ଯୋନିବିଶିଷ୍ଟ ହୋଇ ମାନ-ସରୋବରରେ ଲୁଚିବା ପରେ, ଅମରପତି ପାଇଁ ଖୋଜା ଚାଲିଲା । ମର୍ତ୍ତ୍ୟର ରାଜା ନହୁଷ ଶୂର ବୀର ଓ ସମସ୍ତ ସଦ୍‌ଗୁଣସଂପନ୍ନ ହେତୁ ମନୋନୀତ ହୋଇ ଇନ୍ଦ୍ରାସନ ଗ୍ରହଣ କଲେ । ଐଶ୍ୱର୍ଯ୍ୟ ମଦରେ ସେ ଶଚୀଙ୍କ ନିକଟକୁ ବାର୍ତ୍ତା ପଠାଇଲେ ତାଙ୍କ ସହ ସମ୍ଭୋଗ କରିବା ପାଇଁ । ଶଚୀ ଦେବଗୁରୁଙ୍କ ପରାମର୍ଶ ନେଇ ନହୁଷଙ୍କୁ ଋଷିମାନେ ବହନ କରିବା ଯାନରେ ଆସିବାକୁ କହିଲେ । ସେ ସେପରି କରିବାରୁ ଅଗସ୍ତିଙ୍କ ଦ୍ୱାରା ଅଭିଶପ୍ତ ହୋଇ ସ୍ୱର୍ଗରୁ ନୈମିଷାରଣ୍ୟରେ ପତିତ ହୋଇ ଅଜଗର ଶରୀର ଧାରଣ କରିଥିଲେ ।

ପୟୋଧର = ଜଳଧର, ମେଘ

## ରଶ୍ମି

ତମିସ୍ରା = ଅନ୍ଧାର, ପବି = ବଜ୍ର

ବଜ୍ର ପର୍ବତର ଶତ୍ରୁ, କାରଣ ସପକ୍ଷ ପର୍ବତମାନଙ୍କର ପକ୍ଷ ଇନ୍ଦ୍ର ବଜ୍ରରେ ହାଣି ଦେଇଥିଲେ, ତେଣୁ ଚଳମାନ ପର୍ବତସବୁ ସ୍ଥିର ହୋଇ ରହିଲେ ।

ବ୍ରୀଡ଼ା = ଲଜ୍ଜା, ପରିରମ୍ଭାରମ୍ଭ = (ପରିରମ୍ଭ + ଆରମ୍ଭ ) ଆଲିଙ୍ଗନ୍‌ର ସୂତ୍ରପାତ ।

## ଅରଣ୍ୟ ରୋଦନ

ଶତପତ୍ର = ପଦ୍ମ, ପ୍ରଜାପତି =butterfly ଓ ବ୍ରହ୍ମା

ଘନରସ = ଜଳ, ପ୍ରେମ । ବିଟପ = ବୃକ୍ଷ, ଲମ୍ପଟ

ଶିଳାଜିତ, ବସନ୍ତ କୁସୁମାକର ଓ ମକରଧ୍ୱଜ ଆୟୁର୍ବେଦିକ ଔଷଧ, ଯାହାର ସେବନରେ ଜରାଗ୍ରସ୍ତ ମନୁଷ୍ୟ ମଧ୍ୟ ଯୁବକତ୍ୱ ଲାଭ କରେ । ଏଠାରେ ବନ ଅର୍ଥରେ ଶିଳାକୁ ଜିଣି ଅର୍ଥାତ୍ ପଥର ଫଟାଇ ଚେର ଯାଇ, ବସନ୍ତ ଋତୁ ଫୁଲରେ ମଣ୍ଡିତ ହୋଇ କାମଦେବକୁ ସେବା କରୁ, ଅର୍ଥାତ୍ ସଂଭୋଗ ସମର୍ଥ ହୋଇ ପ୍ରଜନନ କରୁ ଓ ବୃକ୍ଷର ସଂଖ୍ୟା ବଢୁ ।

# ସିପାହୀ

ଘାଣ୍ଟୁ = ଥୁଣ୍ଟା ଗଛ, ଶିବ, ମୋର୍ଚ୍ଚା = ସୀମାରେ ପ୍ରାୟ ଚାରିଫୁଟ ଗଭୀର ମାଟି ଖୋଳି ଶତ୍ରୁ ଆକ୍ରମଣରୁ ରକ୍ଷା ପାଇବା ପାଇଁ ସେ ଭିତରେ ରହି, ଗୁଳି ଚଳାଇବା । "କଣ୍ଠେ କଟଟିରେ ତୋର ନାମାଙ୍କିତ ଡିସ୍କ" ଯୁଦ୍ଧ କ୍ଷେତ୍ରରେ ପ୍ରତ୍ୟେକ ସୈନିକର ଗଳାରେ ଓ ହାତ କଟଟିରେ ଏକ ଗୋଲ ଓ ଅପରଟି ଅଣ୍ଡାକୃତି ଡିସ୍କ ବାନ୍ଧିବାକୁ ପଡ଼େ । ଶସ୍ତ୍ରାଘାତରେ ମୃତ ଶରୀର ଚିହ୍ନି ନ ହେଲେ ମଧ ଏ ଦୁଇଟିରୁ ଗୋଟିକୁ ଦେଖି କିଏ ମୃତ ଜାଣିହୁଏ ।

ଆମୁନିଶନ୍ ବୁଟ୍ = ମୋଟା ଚମଡ଼ାର ଭାରୀ ଯୋତା

ବିହୁନେ = ବିନା, କିଟ୍ = ଏକ ବଡ଼ ବସ୍ତାନି ଯେଉଁଥିରେ ନିତ୍ୟ ବ୍ୟବହାର୍ଯ୍ୟ ଲୁଗା, କମ୍ବଳ ଓ ଅନ୍ୟାନ୍ୟ ଆବଶ୍ୟକୀୟ ବସ୍ତୁ ଥାଏ ।

ପେକ୍ ଜିରୋ ଏଇଟ୍ = pack 08. ପିଠିରେ ବହୁଥିବା ବଡ଼ ଝୋଲା ଯେଉଁଥିରେ ଆବଶ୍ୟକୀୟ ଜିନିଷ ଥାଏ ।

ଶାଳୀ ସୁରଭି = ପାଚିଲା ଧାନର ଗନ୍ଧ

ପାହି ପାହି = ରକ୍ଷାକର, ରକ୍ଷାକର

ତପସ = ତପସ୍ୟା

# ବସନ୍ତ ବିଳାସ

କୃତାନ୍ତ = ଯମ, ଯେ ଶେଷ କରେ, ବିପଞ୍ଚୀ = ବୀଣା

ପୁରଟ = ସୁନା, ସ୍ରୋତସ୍ୱତୀ = ନଦୀ ସିତ = ଶ୍ୱେତ

କିଶଳୟ = କୋମଳ ପତ୍ର, ସୁରଭିତ = ସୁଗନ୍ଧଯୁକ୍ତ

କଲ୍ଲୋଳ = ଲହରୀ, କାକଳୀ = ପକ୍ଷୀ କୂଜନ, କଳି = କଢ଼ି

ପତତ୍ରୀ = ପକ୍ଷୀ

ବପୁ = ଶରୀର, ଚଳ ଜଳମୁଚ = ଚଳାମେଘ

# ପ୍ରେମ କି ଛଳନା

କୋଣାର୍କର ଚନ୍ଦ୍ରଭାଗା ନଦୀ ରୌଦ୍ର ରଶ୍ମିରେ ବାଲିସ୍ତୂପ ଭିତରେ ସମାଧି ଲଭିଛି । ବର୍ତ୍ତମାନ ଏକ ଛୋଟ କୁଣ୍ଡର ଜଳକୁ ଚନ୍ଦ୍ରଭାଗାର ପବିତ୍ର ଜଳ ଭାବି ତୀର୍ଥଯାତ୍ରୀମାନେ ସେବନ କରନ୍ତି ।

ବନ୍ଧୁର = ଷ୍ନେହୀର, ଅସମତଳ, ଅମିୟ = ଅମୃତ
ବେଳା = ସମୁଦ୍ର କୂଳ, ସମୟ, ବ୍ୟାଜ = ଛଳନା
କୁଳାୟ = ନୀଡ଼, ପକ୍ଷୀବସା, ପ୍ରତ୍ୟୟ = ବିଶ୍ୱାସ, ଅତ୍ୟୟ = ମୃତ୍ୟୁ

## ଅହଲ୍ୟା ଉଦ୍ଧାର

ଷଣ୍ମାତୁର = କାର୍ତ୍ତିକେୟ, ଦେବ ସେନାପତି, କ୍ରତୁ = ଯଜ୍ଞ

## ସ୍ମୃତି

କୋରାଲ୍ = ପ୍ରବାଳ, ମୁମୁକ୍ଷୁ = ମୋକ୍ଷକାମୀ
ଦିଗବାସ = ଦିଗମ୍ବର, ଲଙ୍ଗଳା, stark nacked
କଥିତ ଅଛି ଗରୁଡ଼ ସୁଧା (ଅମୃତ) କୁମ୍ଭ (ହାଣ୍ଡି) ଧରି ଉଡୁଥିବାବେଳେ ଏକ ଏକ ବିନ୍ଦୁ ଅମୃତ ଯେଉଁ ଯେଉଁ ସ୍ଥାନରେ (ପ୍ରୟାଗ, ହରଦ୍ୱାର, ଉଜ୍ଜୟିନୀ ଓ ନାସିକରେ) ପଡ଼ିଲା ସେସବୁଠାରେ କୁମ୍ଭମେଳା ହୁଏ ।
ଗରଳ ଜାଳ = ବିଷସମୂହ ବିହାୟସ = ଆକାଶ
ବାତଜାତ = ପବନ ପ୍ରଣୋଦିତ ଜହ୍ନୁସୁତା = ଜାହ୍ନବୀ, ଗଙ୍ଗାନଦୀ
ଭୀମକାନ୍ତ = ଯେ ଭୀମ (ଭୟଙ୍କର) ସେ କାନ୍ତ (ସୁନ୍ଦର)

## ଗୌତମ ବୁଦ୍ଧ

ଗନ୍ଧର୍ବ ନାୟକ = ଜନୈକ ବ୍ୟକ୍ତି
କୋଇଲା (Carbon) ଅତ୍ୟଧିକ ଚାପ ଓ ଉତ୍ତାପ ଦ୍ୱାରା ହୀରା ପାଲଟେ ।
ଜରଠ = ବୃଦ୍ଧ, ଜଠର = ପେଟ, ତୁମ୍ବୀ = ଲାଉ

## ଗ୍ରୀଷ୍ମ ଋତୁର କବିତା

ତାରକାଗୁଡ଼ିକ ଷୋହଳ ସହସ୍ର ଗୋପନାରୀ କି ? ତାଳଗଛଗୁଡ଼ିକ ବିଷ୍ଣୁ ଅର୍ଥାତ୍ କୃଷ୍ଣ । ନିଦାଘ = ଗ୍ରୀଷ୍ମ
ଶିଖୀ = ମୟୂର, ଅଗ୍ନି, ଚକ୍ଷୁଶ୍ରବା = ସାପ, କଥିତ ଅଛି ସାପ ଆଖିରେ ଶୁଣେ ।

ଦେଶଭକ୍ତ ର ଧ୍ୟାନ "ମିଶୁ ମୋର ଦେହ ଏ ଦେଶ ମାଟିରେ।..." ନେଉଳର ଦେହର ରଙ୍ଗ ମାଟି ସହିତ ମିଶିଯାଉଛି ।
ନେଉଳ ରାସ୍ତାରେ ଦେଖିଲେ ଶୁଭ ବୋଲି ଜନଶ୍ରୁତି । "ବାମେ ଶବ ଶିବା କୁମ୍ଭାଃ, ଦକ୍ଷିଣେ ଗୋ ମୃଗ ଦ୍ୱିଜାଃ । ନକୁଳଃ ସର୍ବକାର୍ଯ୍ୟାଣି, ଅହିଃ ସର୍ବତ୍ର ବାଧ୍ୟତେ ।"

## ଇନ୍ଦ୍ରଧନୁ

ଏସିଡ୍ ଟେଷ୍ଟ = କୌଣସି Salt କୁ ଶେଷ ନିର୍ଦ୍ଧାରଣ ପରୀକ୍ଷା କରାଯାଏ ଅମ୍ଳ (Acid) (ଦ୍ୱାରା) ।
ନୁକ୍ତାଚିନି = ତର୍ଜମା, ତର୍କ ବିତର୍କ

## ତରଙ୍ଗର ବ୍ୟବଧାନ

ଉତ୍ତାନ = ପଠା, ପଡ଼ିଆ । ତରଙ୍ଗ ସଦା ଚଳନଶୀଳ, ତେଣୁ ତାର ବ୍ୟବଧାନ କ୍ଷଣଭଙ୍ଗୁର । ପୁଣି କବି ଶ୍ରୀଲଙ୍କାରେ ଥିବାରୁ ନିଜ ପ୍ରିୟାଠାରୁ ତାଙ୍କ ବ୍ୟବଧାନ କେବଳ ତରଙ୍ଗଗୁଡ଼ିକର (ଜଳରାଶିର)

## ଚିରନ୍ତନ ରୀତି

ବେପଥୁ = କମ୍ପନ, ବଳାହକ = ମେଘ
ବିଭାବ = ବିଶେଷ ଭାବ । କବି ଦୀନକୃଷ୍ଣ ଦାସଙ୍କ ଭାଷାରେ "କେତେ ମୁଁ କହିବି ସେ କାଳ ବିଭବ ଯେତେ ହାବ,ଭାବ,ବିଭାବ । କଟାକ୍ଷ କଟାକ୍ଷ ମିଳନେ ପ୍ରତ୍ୟକ୍ଷ ହୁଅଇ ନାହିଁ ମନୋଭବ ।" —ରସକଲ୍ଲୋଳ
ଦୂର୍ବାକ୍ଷତ = ଦୁବ ଓ ଚାଉଳ, ପୂଗ = ଗୁଆ

## ଦୁଇଟି କବିତା

କରକା = କୁଆ ପଥର, ବାସନା = ବାସ୍ନା, କାମନା

## ସୁମନ ସୁଗନ୍ଧ

ସୁମନ = ଫୁଲ ଦେବତା (ସୁମନସ୍) ଉତ୍ତମ ମନ

## କନକ ସେନ୍ତୁରାଇ

ଏଠାରୁ ମୁଁ ଜଳଜାହାଜ ଦ୍ୱାରା ମାନ୍ଦ୍ରାଜରେ (ବର୍ତ୍ତମାନର ଚେନ୍ନାଇ) ପହଞ୍ଚି ସେଠାରୁ ଟ୍ରେନ୍ ଦ୍ୱାରା ପ୍ରଥମେ ଗୁଣପୁର ଯାଇ ବାପା-ମାଆଙ୍କ ଠାରୁ ଆଁଶୀର୍ବାଦ ଗ୍ରହଣ କଲି ଓ ପରେ ସାଗର (ମଧ୍ୟ ପ୍ରଦେଶ ଅନ୍ତର୍ଗତ) ଯାଇ ମୋ ପରିବାର ସହିତ ମିଶିଲି ।

ଜେଟି = ସମୁଦ୍ର ଭିତରକୁ ପଶିଯାଇଥିବା କଂକ୍ରିଟ୍ ପଥ, ଏହା ଉପରେ ଟ୍ରକ୍ ଯାଇ ଜାହାଜରୁ ମାଲ ବୋହି ଆଣେ ।

ବାଳୀ = ବାଳିକା, ଶମନପୁର = ଯମପୁର

ପୋତାଶ୍ରୟର (ବନ୍ଦରର) ଅବା କ'ଣ କ୍ଷତି ହେବ ? ଅନେକ ଜାହାଜ ଯଦି ଏକା ସାଙ୍ଗରେ ବନ୍ଦରକୁ ଆସିବାକୁ ଚେଷ୍ଟା କରିବେ ତେବେ ଧସ୍ତାଧସ୍ତି ହୋଇ କ୍ଷତିଗ୍ରସ୍ତ ହେବେ ।

କପୋତପୋତ = କପୋତ ଶିଶୁ, ଗଳୁରିବା = ଆସ୍ତେ ଆସ୍ତେ କଅଁଳିଉଠିବା (ଗଜା ମାରିବା) । ଜଣେ କଷ୍ଟ କରି ଅର୍ଥ ସଞ୍ଚୟ କରେ, ଅନ୍ୟମାନେ ଘରେ ବସି ସେ ଅର୍ଥ ଉପଭୋଗ କରନ୍ତି, ତେଣୁ କାହା ଭାଗ୍ୟରେ କଷ୍ଟ ପଡ଼ିବା ତ କାହା ଭାଗ୍ୟରେ ବିଳାସବ୍ୟସନରେ ମାତିବା ଲେଖାଥାଏ ।

## ପଏଣ୍ଟ ପେଡ୍ରୋରେ ବର୍ଷା

ଜାଫନା ଅନ୍ତରୀପର ଉପକୂଳବର୍ତ୍ତୀ ସହର ବିଶେଷ । ଏ ଉପକୂଳ ଅଗଭୀର । ବାଲି ଅବା ମାଟି ନାହିଁ, ଚଟାଣ ଟାଣ ଚୂନପଥର ବା ଶୁଭ୍ର ପ୍ରବାଳ (Coral) ନିର୍ମିତ ।

ମେଘ ପୁଷ୍ପ = ଜଳ, ମେଦିନୀ = ପୃଥିବୀ

ଅଜଗର ବୃତ୍ତି ଧାରୀ = ଯେ ଧୂଳିରେ ଧୂସର, ଯେଉଁଠି ସେଇଠି ବ୍ରହ୍ମଙ୍କୁ ଧ୍ୟାନକରି ପଡ଼ି ରହେ, ଯାହା ଯେଉଁଠାରେ ଯେତେବେଳେ ମିଳେ ଖାଏ । ତଲ୍ଲୀନ ହୋଇ ତାର ବାହ୍ୟ ଜ୍ଞାନ ନ ଥାଏ । ■■